# ଭଞ୍ଜ ସାହିତ୍ୟ ପରିକ୍ରମା

ଶ୍ରୀ ମାଗୁଣି ଦାସ
ସଂପାଦକ

# ଭଞ୍ଜ ସାହିତ୍ୟ ପରିକ୍ରମା


ସମ୍ପାଦକ

**ଶ୍ରୀ ମାଗୁଣି ଦାଶ**

ସ୍ୱାଧୀନତା ସଂଗ୍ରାମୀ, ସାମ୍ବାଦିକ ଓ
ଅବସର ପ୍ରାପ୍ତ ଜିଲ୍ଲା ଲୋକ ସମ୍ପର୍କ ଅଧିକାରୀ
ପୋ : ଭଞ୍ଜନଗର (ଗଞ୍ଜାମ)

ପ୍ରକାଶକ

**ଶ୍ରୀ ମାଗୁଣି ଦାଶ**

ଭଞ୍ଜ ସମ୍ରାଟ ବୁକ୍ ଷ୍ଟୋର
ପୋ : ଭଞ୍ଜନଗର (ଗଞ୍ଜାମ)

ପ୍ରଥମ ସଂସ୍କରଣ ୧୯୯୧

ମୁଦ୍ରାକର

**ଶ୍ରୀ ଗୋବିନ୍ଦ ବାଉତିଆ**

ଜନଙ୍ଗ ପ୍ରେସ୍, ବ୍ରହ୍ମପୁର-୧

ମୂଲ୍ୟ ଟ ୨୫.୦୦

ଚ୍ଛଦ

ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିକୃତି
ଉପେନ୍ଦ୍ର ଭଞ୍ଜ ଉଚ୍ଚ ଇଂରାଜୀ ବିଦ୍ୟାଳୟ
ଭଞ୍ଜ ନଗର
ଶିଳ୍ପୀ :- ଶ୍ରୀ ଜି. ଭାସ୍କର ସ୍ୱାମୀ
ଚିତ୍ର ଶିକ୍ଷକ

# ପୂର୍ବପଦ

ପ୍ରାୟ ପାଞ୍ଚ ଛ ବର୍ଷ ତଳେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ସାହିତ୍ୟ ଉପରେ ଗୋଟିଏ ପରିକ୍ରମା ପ୍ରକାଶ କରିବା ପାଇଁ ପରିକଳ୍ପନା କରି ମୁଁ ଗଞ୍ଜାମର କେତେ ଜଣ ବିଶିଷ୍ଟ ସାହିତ୍ୟିକ, ଗବେଷକ ଓ ଆଲୋଚକମାନଙ୍କ ପାଖକୁ ପତ୍ର ଲେଖି ଲେଖାଟିଏ ଲେଖାଏଁ ଦେବା ପାଇଁ ଅନୁରୋଧ କରିଥିଲି ।

ମୋ ଅନୁରୋଧ ରକ୍ଷାକରି ପାଞ୍ଚ, ସାତ ଜଣ ବନ୍ଧୁ ଗୋଟିଏ ଗୋଟିଏ ଆଲୋଚନା ମୂଳକ ଲେଖା ପଠାଇ ଦେଇଥିଲେ । ଯାହାକି ଏ ବହିରେ ସ୍ଥାନ ପାଇଛି । ଅନ୍ୟ ବନ୍ଧୁମାନଙ୍କୁ ମୁଁ ବାରମ୍ବାର ପତ୍ର ଲେଖି, ସାକ୍ଷାତ କରି ବହୁ ଅନୁରୋଧ କରିବା ସତ୍ତ୍ୱେ ସେମାନଙ୍କ ଠାରୁ କୌଣସି ସହଯୋଗ ପାଇ ପାରିଲି ନାହିଁ । ଏଥିପାଇଁ ମୁଁ ବିଶେଷ ଭାବେ ଦୁଃଖିତ । ଏପରି ଏକ ମହତ୍ କାର୍ଯ୍ୟରେ ମତେ କାହିଁକି ଯେ ସେମାନେ ସହଯୋଗ କଲେ ନାହିଁ, ମୁଁ ଜାଣି ପାରିଲି ନାହିଁ ।

୧୯୪୫ ମସିହାରେ ଚନ୍ଦରଡ଼ା ଗୋଶାଳଠାରେ ଓଡ଼ିଶାର ବହୁ ବିଶିଷ୍ଟ ସାହିତ୍ୟିକଙ୍କ ଉପସ୍ଥିତିରେ ଭଞ୍ଜ ସାହିତ୍ୟ ପରିଷଦ ଗଢ଼ା ହେଲା । ସେତେବେଳେ ମୁଁ ପରିଷଦର ଜଣେ ସମ୍ପାଦକ ଦାୟିତ୍ୱ ଗ୍ରହଣ କରିବା ପରେ ଧୁମୁସରର ଗାଁ ଗହଳରୁ ଭଞ୍ଜଙ୍କ ରଚିତ ଅନେକଗୁଡ଼ିଏ ତାଳପତ୍ର ପୋଥି ସଂଗ୍ରହ କରି ପରିଷଦରେ ଜମା ଦେଇଥିଲି । ୧୯୫୪ ମସିହାରେ ମୁଁ ଓଡ଼ିଶା ସରକାରଙ୍କ ଲୋକ ସମ୍ପର୍କ ବିଭାଗରେ ଚାକିରି ପାଇ ଭଞ୍ଜନଗର ଛାଡ଼ିବାକୁ ବାଧ୍ୟ ହେଲି । ୧୯୭୭ ମସିହାରେ ମୁଁ ଚାକିରିରୁ ଅବସର ନେବା ପରେ ଭଞ୍ଜନଗର ଫେରି ଦେଖିଲି ଉକ୍ତ ସମସ୍ତ ମଧ୍ୟରେ ତାଳପତ୍ର ପୋଥିଗୁଡ଼ିକ [illegible] ଘାଟ କେଉଁଆଡ଼େ ଉଭେଇ ଯାଇଛି ।

ଭଞ୍ଜସାହିତ୍ୟ ପରିଷଦର ସମ୍ବିଧାନ ପ୍ରକାରେ କେତୋଟି ଉଦ୍ଦେଶ୍ୟ ମଧ୍ୟରୁ ଭଞ୍ଜଙ୍କ ଅପ୍ରକାଶିତ ରଚନାଗୁଡ଼ିକ ତାଳପତ୍ର ପୋଥିରୁ ସଂଗ୍ରହ କରି ପ୍ରକାଶ କରିବା ପ୍ରଧାନ । ଅତଏବ ଏହି ଉଦ୍ଦେଶ୍ୟ ସାଧିତ ହୋଇ ପାରିଲା ନାହିଁ ।

ଚାକିରିରୁ ଅବସର ନେବା ପରେ ମୁଁ ଭଞ୍ଜନଗର ଫେରି ମୋର ପୂର୍ବ ଆଗ୍ରହକୁ କାର୍ଯ୍ୟକାରୀ କରିବା ପାଇଁ ଘୁମୁସରର ଗାଁ ଗହଳରୁ ତାଳପତ୍ର ପୋଥି ପୁଣି ସଂଗ୍ରହ କରି ସେଥିରୁ ଅପ୍ରକାଶିତ ଲେଖାଗୁଡ଼ିକ ପ୍ରକାଶ କରିବା ପାଇଁ ଉଦ୍ୟମ କଲି । ମୁଁ ଏ ପର୍ଯ୍ୟନ୍ତ ଗଦ୍ୟ ଓ ପଦ୍ୟ ମିଶି ତିନ ପ୍ରକାର ଭଞ୍ଜ ବଂଶାବଳୀ, ରାଜକବି ଧନଞ୍ଜୟ ଭଞ୍ଜଙ୍କ ରଚିତ ଶ୍ରୀକୃଷ୍ଣ କ୍ରୀଡ଼ା, ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଷୋଳପୋଇ ଏହିପରି ପାଞ୍ଚ ଖଣ୍ଡ ବହି ତାଳପତ୍ର ପୋଥିରୁ ସଂଗ୍ରହ କରି ପ୍ରକାଶ କରିଛି ।

ବହିଗୁଡ଼ିକ ସଂଗ୍ରହ କରି ପ୍ରକାଶ କରିବା ପାଇଁ ମତେ ବହୁତ କଷ୍ଟ ସ୍ୱୀକାର କରିବାକୁ ହୋଇଛି । ଉପେନ୍ଦ୍ର ଭଞ୍ଜ ତଥା ଘୁମୁସର ରାଜ୍ୟର ଐତିହ୍ୟ ସମ୍ବନ୍ଧରେ ମୋର ପ୍ରାୟ ଶତାଧିକ ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି, ଏବଂ ରେଡ଼ିଓ ମାଧ୍ୟମରେ ମଧ୍ୟ ପ୍ରସାରିତ ହୋଇଛି ।

ଏ ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କର ଆଉ କେତୋଟି ଅପ୍ରକାଶିତ ରଚନା ଥିବା ତାଳପତ୍ର ପୋଥି ମୁଁ ସଂଗ୍ରହ କରିଛି । ସେଗୁଡ଼ିକ ଶୀଘ୍ର ପ୍ରକାଶ କରିବା ପାଇଁ ଉଦ୍ୟମ ହେଉଛି ।

ଘୁମୁସରର ଗାଁ ଗହଳରେ ପ୍ରାୟ ପ୍ରତ୍ୟେକ ଗ୍ରାମରେ ଜଣାଶୁଣା ଲୋକଙ୍କ ଘରେ ବହୁତ ତାଳପତ୍ର ପୋଥି ଏବେ ମଧ୍ୟ ରକ୍ଷିତ ଅଛି । ତାଳପତ୍ର ପୋଥି କେହି ପଢ଼ୁ ନଥିବାରୁ ସେଥିରେ କଣ ଅଛି କେହି ଜାଣି ପାରନ୍ତି ନାହିଁ । ଫଳରେ ସେ ଗୁଡ଼ିକ ଯତ୍ନ ଅଭାବରୁ ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ "ଅଜ୍ଞ, ଅଳସ, ହୀନରେ ନ ହୋଇ ବଖାଣ, ଉତ୍ତମ ଜନଙ୍କେ [illegible] ନୋହିଣ ପ୍ରକାଶ ହେଉ ସର୍ବଦେଶ" ଉକ୍ତିର ବ୍ୟତିକ୍ରମ ହେଉଛି । ପୋଥିଗୁଡ଼ିକ ମୂଷା, କଅଁ, ଓ ଉଇମାନଙ୍କ ଦ୍ୱାରା ନଷ୍ଟ ହେଉଛି ।

ଉପେନ୍ଦ୍ର ଭଞ୍ଜ ଶ୍ରେଷ୍ଠ କବି ପ୍ରାୟ ସତୁରି ଖଣ୍ଡ ଗ୍ରନ୍ଥ, ବହୁ ଚୌତିଶା, ଚୌପଦୀ, ଭଜନ, ଚଟାଳ, ଡ଼ଗ ଡମାଳ ଇତ୍ୟାଦି ରଚନା କରିଅଛନ୍ତି। ସେଥି ମଧ୍ୟରୁ ମାତ୍ର ୩୦ ଖଣ୍ଡ ଗ୍ରନ୍ଥ ଏ ପର୍ଯ୍ୟନ୍ତ ପ୍ରକାଶ ପାଇଛି, ବାକି ଅଧାରୁ ଅଧିକ ଗ୍ରନ୍ଥ ଅପ୍ରକାଶିତ ରହିଛି।

ଓଡ଼ିଆ ହିସାବରେ 'ଆମର ଭଣ ଗ୍ରନ୍ଥଗୁଡ଼ିକ ଖୋଜି ବାହାର କରିବା କର୍ତ୍ତବ୍ୟ ନୁହେ ? ଏହା କରାଗଲେ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ହେବା ସଙ୍ଗେ ସଙ୍ଗେ ଉପେନ୍ଦ୍ର ଭଞ୍ଜଙ୍କ ଅମର ଆତ୍ମା ସ୍ୱର୍ଗରେ ଥାଇ ସନ୍ତୋଷ ଲାଭ କରିବ ଏଥିରେ ସନ୍ଦେହ ନାହିଁ।

ଗ୍ରନ୍ଥ ଖଣ୍ଡିକ ପ୍ରକାଶ କରିବାରେ ମୋତେ ଯେଉଁମାନେ ସାହାଯ୍ୟ, ସହଯୋଗ କରିଛନ୍ତି ମୁଁ ସେମାନଙ୍କୁ କୃତଜ୍ଞତା ଜଣାଉଛି। ପାଠକମାନଙ୍କଠାରୁ ଉତ୍ସାହ ପାଇଲେ ଭବିଷ୍ୟତରେ ଭଞ୍ଜଙ୍କର ଆଉ କେତୋଟି ଅପ୍ରକାଶିତ ରଚନା ପ୍ରକାଶ କରିବାକୁ ସମର୍ଥ ହେବି। ଜୟ ଭଞ୍ଜ କବି।

ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା
ଭଞ୍ଜନଗର

ଶ୍ରୀ ମାଗୁଣି ଦାସ
ସମ୍ପାଦକ

# ଲେଖକଙ୍କ ଦ୍ୱାରା ସଂଗୃହିତ ଓ ରଚିତ ବହି

୧ । ଗୋପବନ୍ଧୁ ସ୍ମୃତି (କବିତା)
୨ । ପ୍ରେମର ପରିଣାମ (ଉପନ୍ୟାସ)
୩ । କଏଦୀର ଭାବନା (ଜେଲଭିତରେ ଲେଖା କବିତା)
୪ । ରସିକାନୁଚନ୍ଦ୍ରା (ସଂଗୃହିତ)
୫ । ଭଞ୍ଜ ବଂଶାନୁଚରିତ (ତାଳପତ୍ର ପୋଥିରୁ ସଂଗୃହିତ ୨ୟ ସଂସ୍କରଣ)
୬ । ଭଞ୍ଜ ବଂଶାବଳୀ (ଗଦ୍ୟ) ,,
୭ । ଭଞ୍ଜ ବଂଶ ଓ ଘୁମସର ବିଦ୍ରୋହ ,,
୮ । ଶ୍ରୀ କୃଷ୍ଣକ୍ରୀଡ଼ା (ଧନଞ୍ଜୟ ଭଞ୍ଜ) ,,
୯ । ଶ୍ରୀ ରଘୁନାଥ ଜଣାଣ- (ଭକ୍ତଚରଣ ଦାସ) ,,
୧୦ । ଷୋଳପୋଇ— (ଉପେନ୍ଦ୍ର ଭଞ୍ଜ) ,,
୧୧ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ (ଜୀବନୀ) ,,
୧୨ । କମ୍ବଳୀରେ ଭଞ୍ଜ-
୧୩ । ଗଞ୍ଜାମ ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମରଣିକା
୧୪ । ଫୁଲବାଣୀର କନ୍ଧ ସଂସ୍କୃତି
୧୫ । ଶ୍ରୀ ଶ୍ରୀ ମା ବୁଢ଼ାକେନ୍ଦୁ

ଏହି ଛଡ଼ା ଆହୁରି ଅନେକ ଭଞ୍ଜଙ୍କ ରଚନା ଓ ଅନ୍ୟାନ୍ୟ ବହି ପ୍ରକାଶ ଅପେକ୍ଷାରେ ।

ପରିବେଷକ
କବି ସମ୍ରାଟ ବୁକ୍ ଷ୍ଟୋର
ଭଞ୍ଜ ନଗର (ଗଞ୍ଜାମ)
ଏବଂ
କଟକ, ବ୍ରହ୍ମପୁରର ବଡ଼ ବଡ଼ ବହି ଦୋକାନ

# ସୂଚୀପତ୍ର



*—*

# ଭଂଜ ସାହିତ୍ୟର ନାରୀ

ଅଧ୍ୟାପକ ଗୌରୀକୁମାର ବ୍ରହ୍ମା

'ଭଂଜ ସାହିତ୍ୟରେ ନାରୀର ସ୍ଥାନ'—ଏ ପ୍ରଶ୍ନ ଉଠିଲାବେଳେ ଅନେକଙ୍କର ଧାରଣା ହୁଏ, ଯେତେଯେପରିକି ଭଂଜ ସାହିତ୍ୟରେ ନାରୀ ବ୍ୟକ୍ତିତ୍ୱ ଆଉ କିଛି ନାହିଁ। ଏହାର କେତୋଟି କାରଣ ଥାଇପାରେ। ପ୍ରଥମ, ଭଂଜ ସାହିତ୍ୟର ଯଥାର୍ଥ ଅନୁଶୀଳନର ଅଭାବ। ଦ୍ୱିତୀୟ, ବଙ୍ଗୀୟ ସମୀକ୍ଷକ ରମେଶଚନ୍ଦ୍ର ମଜୁମଦାରଙ୍କ ମନ୍ତବ୍ୟ ସହରେ ଦୃଢ଼ ଅସୁସ୍ଥ ଧାରଣା। ତୃତୀୟ, ଭଂଜଙ୍କ କାବ୍ୟାବଳୀର ନାମକରଣରେ ନାରୀନାମର ପ୍ରାଧାନ୍ୟ। ଚତୁର୍ଥ, ପାଲା ଓ ଦାସକାଠିଆ ଅନୁଷ୍ଠାନରେ ତଥା ସଂଗୀତ ସଭାମାନଙ୍କରେ ପରିବେଷିତ ଭଂଜଙ୍କ ସଂଗୀତରେ ଶୃଙ୍ଗାରରସର ପ୍ରାଧାନ୍ୟ, ଇତ୍ୟାଦି।

ସ୍ତ୍ରୀ ଏବଂ ପୁରୁଷଙ୍କୁ ନେଇ ମାନବସମାଜ ବଞ୍ଚିରହିଛି। ବିଶ୍ୱ ସାହିତ୍ୟରେ ଏଥିର ଦୃଷ୍ଟାନ୍ତ ଏକାବେଳକେ ଗୋଟିଏ। ଭଂଜ ସାହିତ୍ୟରେ ଠିକ୍ ସେହି କଥା। ତେବେ, ନାୟିକାଙ୍କର ପ୍ରାଧାନ୍ୟ ମୂଳକ କାବ୍ୟ ରଚନାର ବିବେଚନା ଆଦୌ ଦୂଷ୍ୟ ନୁହେ। କେବଳ ଦେଖିବାର କଥା, କଳାଗତ କୃତିତ୍ୱର ପରିସର ମଧ୍ୟରେ କବି ତାଙ୍କ କୃତିକୁ କେତେଦୂର ଯୁଗୋଚିତ କିମ୍ବା ଦେଶକାଳୋଚିତ କରିପାରିଛନ୍ତି।

ଆଳଂକାରିକମାନେ କହିଯାଇଛନ୍ତି, "ଇତିହାସ କଥୋଦ୍ଭୂତଂ" ଅର୍ଥାତ୍ କାବ୍ୟ ରଚନା କଲାବେଳେ ଇତିହାସରୁ ଉପଜୀବ୍ୟ ବିଷୟ ସଂଗ୍ରହ କରିବାକୁ ହେବ। ଭାରତର ସୁପ୍ରସିଦ୍ଧ ତିନୋଟି ମହାଗ୍ରନ୍ଥ ଏ ପ୍ରସଂଗରେ ଉଲ୍ଲେଖଯୋଗ୍ୟ। ସେଗୁଡ଼ିକ ହେଲେ - ରାମାୟଣ, ମହାଭାରତ, ଶ୍ରୀମଦ୍ ଭାଗବତ ତଥା ବିବିଧ ପୁରାଣ ଗ୍ରନ୍ଥ। ଉପେନ୍ଦ୍ର ଥିଲେ, ବାଲ୍ମୀକି ଏବଂ ବ୍ୟାସଦେବଙ୍କର ପରମ ଭକ୍ତ। ଏହି ତିନୋଟି ମହାଗ୍ରନ୍ଥର ଆଧାର ଉପରେ ତିନୋଟି ପ୍ରସିଦ୍ଧ କାବ୍ୟ ଲେଖିଛନ୍ତି—

୧) ବୈଦେହୀଶ ବିଳାସ ୨) ସୁଭଦ୍ରା ପରିଣୟ ଏବଂ ୩) ରସିକହାରାବଳୀ?

କେବଳ ରାମଚରିତ ଉପରେ ତାଙ୍କର ଆହୁରି ତିନୋଟି ରଚନା ଅଛି, ଯଥା—ରସଭଂରଗ, ରାମଲୀଳାମୃତ ଏବଂ ଚୋଳପୋଇ । ଭାଗବତର ଭିତ୍ତିଭୂମିରେ ଆହୁରି ଦୁଇ ତିନୋଟି କାବ୍ୟ ସେ ଲେଖିଛନ୍ତି । ଏ ସମସ୍ତ କାବ୍ୟର ଆଧାର ଉପରେ ଯଦି ଭଂଜ ସାହିତ୍ୟରେ ତାଙ୍କର ସ୍ଥାନ ଆଲୋଚନା କରାଯାଏ, ତାହାହେଲେ ମଧ୍ୟ ଅ-ଯଥେଷ୍ଟ ହେବ ନାହିଁ ।

କିନ୍ତୁ ଭଂଜ ସାହିତ୍ୟର ଅଦ୍ଭୁତ ଏକ ବିଶିଷ୍ଟ ଦିଗ ହେଉଛି, କାଳ୍ପନିକ କାବ୍ୟମାଳା ମଧ୍ୟରେ ଅନ୍ତତଃ ଚାରିଗୋଟି କାବ୍ୟ ଅସାଧାରଣ ଜନପ୍ରିୟତା ଲାଭ କରିଅଛି—କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ପ୍ରେମସୁଧାନିଧି ଏବଂ ରସିକହାରାବଳୀ । ଏହି କାବ୍ୟଗୁଡ଼ିକୁ ଭିତ୍ତିକରି ଭଂଜଲେଖନୀରେ ନାରୀର ରୂପାୟନ ଆଲୋଚିତ ହେବାର ଅଧିକତର ଉପାଦେୟତା ହୁଏତ ଅନେକେ ଉପଲବ୍ଧି କରୁଥିବେ ।

ଯଥାର୍ଥ ସମୀକ୍ଷା ଦୃଷ୍ଟିରୁ ଉଭୟ ଶ୍ରେଣୀର କାବ୍ୟ ଭିତ୍ତିରେ ଭଂଜୀୟ କୃତିଗୁର ମୂଲ୍ୟାୟନ ସମୀଚୀନ ।

ବୈଦେହୀଶ ବିଳାସର ସୀତା, ସୁଭଦ୍ରା ପରିଣୟର ସୁଭଦ୍ରା ଏବଂ ବୈଷ୍ଣବ କାବ୍ୟାବଳୀର ଗୋପାଙ୍ଗନାମାନେ ଭାରତୀୟ ସଂସ୍କୃତି ଭିତ୍ତିରେ ଭଂଜ ଭାରତୀର ଏକ ଏକ ସାର୍ଥକ ସୃଷ୍ଟି । ଭଂଜୀୟ ନାରୀ କେବଳ ମାତ୍ର ନବଯୁବତୀ ନୁହେ କିମ୍ବା ଯୌବନ ବସନ୍ତର ଅମ୍ଳାନ ଚୂତମଞ୍ଜରୀ ନୁହେ । ନାରୀର ବହୁ ବୈଭବ, ଶାନ୍ତ ମଧୁର ବହୁ ଅନୁଭୂତି, ପ୍ରଶାନ୍ତ ଓ ପ୍ରଚଣ୍ଡ ମୂର୍ତ୍ତି ପ୍ରକାଶ୍ୟ, କର୍ତ୍ତବ୍ୟବୋଧର ବିବିଧ ଓ ବିଚିତ୍ର ଚିନ୍ତାବିକାଶ ଭଂଜ ସାହିତ୍ୟରେ ଫୁଟି ଉଠିଛି । ଭଂଜୀୟ ନାରୀ ନାନା ଭାବରେ କାବ୍ୟର ରସସମ୍ପଦ ଓ ଗୁଣସମ୍ପଦର ବୃଦ୍ଧି ସାଧନ କରିଅଛି, ମାତା, ଭଗିନୀ, କନ୍ୟା, ସତୀ, ବଧୂ ସେବିକା ସପତ୍ନୀ ଏବଂ ବିଭିନ୍ନ ରୂପରେ ଭଂଜୀୟ ଲଲନା ନାରୀର ମାର୍ଜନା କରିଅଛି । ସେ ପୁରୁଷର ନର୍ମସଙ୍ଗିନୀ ମାତ୍ର ନୁହେ, ଯଥାର୍ଥରେ ସେ ହେଉଛି ଧର୍ମସଙ୍ଗିନୀ ଏବଂ କର୍ମସଙ୍ଗିନୀ । ନାରୀ ଆତ୍ମତ୍ୟାଗର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସନ୍ତାନର ସୁଖ ଦୁଃଖରେ ତେଗର ସୁଖୀ ଓ ଦୁଃଖୀ ହୋଇଅଛି, ସ୍ୱାମୀର ହର୍ଷ ବିଷାଦରେ ନିଜକୁ ଜଡ଼ିତ କରି ପୁରୁଷର ଅର୍ଦ୍ଧାଙ୍ଗିନୀ ଭାବରେ ଆତ୍ମ ପ୍ରକାଶ କରିଅଛି । ବାଲ୍ମୀକି ଏବଂ ତୁଳସୀଦାସ ରାମଚରିତ ଉପରେ ଗୋଟିଏ

ଗୋଟିଏ କାବ୍ୟ ଲେଖି ଅମର ହୋଇ ରହିଛନ୍ତି । କେବଳ ବୈଦେହୀଶ ବିଳାସ ଆଧାର ଉପରେ ଯଦି ଭଞ୍ଜ ପ୍ରତିଭାର ଅନ୍ୱେଷଣ କରାଯାଏ, ତାହାହେଲେ ତାଙ୍କର ମହତ୍ତ୍ୱ ପ୍ରତିପାଦନ କରିବା ଦିଗରେ ନାସ୍ତ ତଥ୍ୟ ଗୁଡ଼ିକ ଅଳ୍ପ ଉପାଦାନ ଯୋଗାଇ ଦେବେ ନାହିଁ ।

ଭଞ୍ଜଙ୍କର କାଳ୍ପନିକ କାବ୍ୟଗୁଡ଼ିକୁ ଅନୁଧ୍ୟାନ କଲେହେଁ, ସେ ଯୁଗର ସାମାଜିକ ଓ ସାହିତ୍ୟିକ ପୃଷ୍ଠପାର୍ଶ୍ୱର ପ୍ରଭାବ ଲୁଚିଯିବା ଉଚିତ ନୁହେଁ । ସେ ଯୁଗ ଥିଲା ସଂସ୍କୃତ ସାହିତ୍ୟ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତାର ଯୁଗ । ରାଜ ଅନୁଗ୍ରହ ନ ଥିଲେ ଭାଷା ଓ ସାହିତ୍ୟ ସ୍ୱକୀୟ ଭାବରେ ଗଢ଼ି ଉଠିବା ସମ୍ଭବ ନୁହେଁ । ଅଥଚ ସେ କାଳର ରାଜ ଦରବାରରେ ଯେଉଁମାନେ ଥିଲେ ରାଜାଙ୍କ ପରାମର୍ଶଦାତା, ସେମାନଙ୍କର ଅତ୍ୟଧିକ ସଂସ୍କୃତ ପ୍ରୀତି ଥିଲା ଓଡ଼ିଆ ଭାଷାର ରାଜ ମର୍ଯ୍ୟାଦା ଲାଭରେ ପ୍ରଧାନ ଅନ୍ତରାୟ । ସେଥିପାଇଁ ନିଜର କାବ୍ୟ କୃତିରୁ ଦ୍ୱାରା ସେହି ବାଧାର ବନ୍ଧ ଭାଙ୍ଗିବା ପାଇଁ ଉପେନ୍ଦ୍ରଙ୍କର ଥିଲା ସର୍ବ ପ୍ରଧାନ କର୍ତ୍ତବ୍ୟ ।

ନାରୀ ନାମରେ ନାମିତ କାବ୍ୟଗୁଡ଼ିକ ନାରୀ ଜାତି ପ୍ରତି ଭଞ୍ଜଙ୍କ ଆଭିମୁଖ୍ୟର ନିଦର୍ଶନ । କୌଣସି ନାରୀ ସ୍ୱକୀୟ ମର୍ଯ୍ୟାଦାକୁ ବଳିଦେଇ ନୈତିକ ଅଧଃପତନର ଦ୍ୱାର ଉଦ୍‌ଘାଟନ କରିଦେଇ ନାହିଁ । ସମାଜରେ ଓ ପରିବାରରେ ନାରୀ ଗୌରବର ପ୍ରଶାନ୍ତ ଛବିଟି ପରିସ୍ଫୁଟ ହୋଇ ଉଠିଛି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ସଖୀମାନେ କେଳିପୁର ମଣ୍ଡନ କରିଛନ୍ତି । ସେଠାରେ କଣ ରଖିଛନ୍ତି କଣ ? କାହାର ଚିତ୍ର ଲେଖାଇ ମଧୁଶଯ୍ୟା ଗୃହର ସୌନ୍ଦର୍ଯ୍ୟ ବୃଦ୍ଧି କରିଛନ୍ତି ? ସେ ଚିତ୍ର ହେଉଛି ସୀତାରାମଙ୍କର— ଯେଉଁ ରାମ ଏକପତ୍ନୀ ବ୍ରତର ଏବଂ ଯେଉଁ ସୀତା ଏକ ପତି ବ୍ରତର ଅଦ୍ୱିତୀୟ ପ୍ରତିନିଧି । ସେହି ଉପଲକ୍ଷେ ସଖୀମାନେ ଗୋଟିଏ ନୂଆ ଚିତ୍ର ଲେଖାଇଥିଲେ । ଚିତ୍ରରେ ଥିଲା, ମାତୃଗର୍ଭରୁ ବହିର୍ଗତ ହେଉ ହେଉ (ଯେପରିକି, ଦେହଟି ମାତୃଗର୍ଭରୁ ପୂର ବାହାରିବା ଆଗରୁ) ସିଂହ ଶିଶୁଟିଏ ଅଦୂରରେ ଏକ ହାତୀକୁ ଦେଖି, ତାକୁ ବିଦାରି ଦେବାପାଇଁ ତା ଉପରକୁ ଲମ୍ଫ ପ୍ରଦାନର ଚେଷ୍ଟା କରୁଅଛି । ଏଥିରେ ମଧ୍ୟ ନାରୀଜାତି ପ୍ରତି ଭଞ୍ଜମାନସର ବହୁମାନ ବଡ଼ କଳାତ୍ମକ ଭାବରେ ପ୍ରକାଶ ପାଇଅଛି । ମଧୁଶଯ୍ୟା ଗୃହରେ ମିଳନବେଳେ ନାରୀ ଯଦି ପୁରୁଷର ରତି ଶାସ୍ତ୍ରଗତ

ପାଣ୍ଡିତ୍ୟ ଦେଖିବାକୁ ପାଏ, ତାହାହେଲେ ସେ ହୁଏତ ସହିପାରେ, ପୁରୁଷ କୌଣସିନା କୌଣସିଠାରେ ରତିଶାସ୍ତ୍ର ଶିକ୍ଷା କରି ଏଭଳି ଦକ୍ଷତା ଅର୍ଜନ କରିଅଛି । କିନ୍ତୁ ପୁରୁଷ ଯଦି ଶେଷ ସମୟରେ ନାରୀର କାମକଳା ପଟୁତା ଉପଲବ୍ଧି କରେ, ତାହାହେଲେ ସେ କାଳର ସମାଜରେ (ତଥା ଆଜିର ରକ୍ଷଣଶୀଳ ସମାଜରେ) ନାରୀର ଅବସ୍ଥା ସାଂଘାତିକ ହୋଇଉଠିବ । ପୁରୁଷ ବହୁଭାବରେ ନାରୀ ଇଚ୍ଛା କରିବାର ଅଧିକାର ସେ ଯୁଗରେ ପାଇନଥିଲା— ଏବେବି ରକ୍ଷଣଶୀଳ ସମାଜରେ ପାଇନାହିଁ । କିନ୍ତୁ ପୁରୁଷ ନାରୀର ରତିଶାସ୍ତ୍ର ଜ୍ଞାନକୁ ଭିତ୍ତିକରି ତାର ଚରିତ୍ରକୁ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଦେଖିପାରେ । ଏହାର ପରିଣାମ ନାରୀ ପକ୍ଷରେ କିପରି ଭୟଙ୍କର ହୋଇପାରେ ଅନୁଭବୀମାନେ ହିଁ ବୁଝିପାରିବେ । ସେଥିପାଇଁ ଭଞ୍ଜଙ୍କର ଲେଖାମାନରେ କୌଶଳପୂର୍ଣ୍ଣଭାବରେ ଏହି ସଂକେତ ଫୁଟିଉଠିଛି । ସେ କହିବାକୁ ଚାହାନ୍ତି, ହସ୍ତୀର କୁମ୍ଭସ୍ଥଳ ବିଦାରଣ ଯେପରି ସିଂହର ଜନ୍ମଗତ ଗୁଣ (ଓ ସେଥିପାଇଁ କାହାଠାରୁ ଶିକ୍ଷାଲବ୍ଧ ନୁହେଁ, ତା ପକ୍ଷରେ ଦରକାର ନୁହେ) ସେହିପରି, ନାରୀର କାମକଳା କୁଶଳତା ତାର ସ୍ୱାଭାବିକ ବା ଜନ୍ମଗତ । ଯେଉଁ ପୁରୁଷ ପ୍ରେୟସୀର ତାଦୃଶ ବିଚକ୍ଷଣତା ଦେଖି ତା ପ୍ରତି ସନ୍ଦେହ ପୋଷଣ କରେ ସେହି ପୁରୁଷ ସ୍ୱାମୀପଦର ଅଯୋଗ୍ୟ ।

ଲାବଣ୍ୟବତୀର କାବ୍ୟନାୟିକା ସମଗ୍ର ନାରୀ ଜାତିର ଆତ୍ମମର୍ଯ୍ୟାଦା ରକ୍ଷାକରିଅଛି, ଭଞ୍ଜଙ୍କ ମନସ୍ତତ୍ତ୍ୱର ସୂକ୍ଷ୍ମସଙ୍କେତ ପ୍ରଦାନକରି ଲାବଣ୍ୟବତୀକୁ ଯେତେବେଳେ କୁହାଯାଇଛି, "ତୁମେ ତୁମର ପ୍ରିୟତମ ଚନ୍ଦ୍ରଭାନୁ ନିକଟକୁ ପତ୍ରଟିଏ ଲେଖ" । ସେ ଉତ୍ତର ଦେଇଛନ୍ତି—"ମୁଁ ନାରୀ, ମୁଁ କିପରି ଅବା ପ୍ରଥମେ ପତ୍ର ଲେଖିବି"। ପ୍ରେମ ରାଜ୍ୟରେ ନାରୀ କିପରି ନାରୀତ୍ୱ ଆଗରେ ପ୍ରେମକୁ ବଳିଦେଇପାରେ, ଏହା ତହିଁର ଏକ ଜ୍ୱଳନ୍ତ ଉଦାହରଣ ।

ଲାବଣ୍ୟବତୀ କାବ୍ୟରେ ଲାବଣ୍ୟବତୀର ପ୍ରେମପତ୍ର ଓଡ଼ିଆ ସାହିତ୍ୟକୁ ଭଞ୍ଜଙ୍କର ଏକ ସ୍ମରଣୀୟ ଅବଦାନ । ସେ ପତ୍ରରେ ପ୍ରେମିକ ଚରିତ୍ରର ଅନୁରୂପ ଅନେକ କଥା କୁହାଯାଇଛି । କିନ୍ତୁ ରାଜକୁମାର ଚନ୍ଦ୍ରଭାନୁ ପ୍ରତି ରାଜନନ୍ଦିନୀ ଲାବଣ୍ୟବତୀ କେଉଁ କାରଣରୁ ସମାକୃଷ୍ଟ, ତାହାର ପ୍ରଧାନ କାରଣ ଏହି ଯେ, ସେ ହେଉଛନ୍ତି ଜଣେ ବୀରପୁରୁଷ ।

ଗୁଣଜ୍ଞା ନାରୀ ଚିରକାଳ ବୀରଙ୍କର ଅନୁବର୍ତ୍ତିନୀ । ଏଥିପାଇଁ ମହାଭାରତରେ ଅର୍ଜ୍ଜୁନଙ୍କ ପ୍ରତି ଦ୍ରୌପଦୀଙ୍କର ଅଧିକ ଆସକ୍ତି ସୂଚନା ରହିଅଛି । ଦେଶମାତୃକା ଯେତେବେଳେ ବାହ୍ୟ ଶତ୍ରୁଦ୍ୱାରା ଆକ୍ରାନ୍ତ ସେତେବେଳେ ସମଗ୍ରଦେଶର ଏକ ଦେବ ବୀରଶସ୍ତ୍ର । ଦେଶର ସ୍ୱାଧୀନତା ଯାହାଦ୍ୱାରା ସୁରକ୍ଷିତ ହୋଇପାରିବ । ଦେଶରକ୍ଷା କରିବାଭଳି ଗୁରୁତର ଦାୟିତ୍ୱ ତୁଳନାରେ ବ୍ୟକ୍ତିଗତ ପାଣ୍ଡିତ୍ୟ ଅର୍ଜନ ଅପେକ୍ଷାକୃତ ଗୌଣ । ପୁଣି ମନୁଷ୍ୟ ଯେଉଁ ଜ୍ଞାନ ଅର୍ଜନ କରେ, ତାହା ଯଦି ଆଜିକାଲିର କେତେକ ସାର୍ଟିଫିକେଟଧାରୀଙ୍କ ଜ୍ଞାନପରି କେବଳ "ପୋଥିବାଇଗଣ" ହୋଇ ଉଠେ, ତାହାହେଲେ ସେଭଳି ଜ୍ଞାନଲାଭର କୌଣସି ମୂଲ୍ୟ ନାହିଁ । ସେଥିପାଇଁ, ଶଙ୍କର ପ୍ରେମ ପତ୍ରରେ ଲାବଣ୍ୟବତୀ କହୁଛି, "ହେ ଚନ୍ଦ୍ରଭାନୁ ! ମୁଁ ତିନୋଟି କାରଣରୁ ତୁମକୁ ଭଲପାଇବାକୁ ଆରମ୍ଭ କଲି । ତୁମେ ବୀରପୁରୁଷ । ତରବାରିବଳେ ମାତୃଭୂମିର ସ୍ୱାଧୀନତା ରକ୍ଷା କରିପାରିବ । ତୁମେ ବହୁଶାସ୍ତ୍ରରେ ଗଭୀର ଜ୍ଞାନଅର୍ଜନ କରିଅଛ । ଏହା ବ୍ୟତୀତ ତୁମେ କେବଳ ଯେ ଶାସ୍ତ୍ରଜ୍ଞାନୀ ପଣ୍ଡିତ, ତାହା ନୁହେଁ । ତୁମେ ତୁମର ଜ୍ଞାନ ପ୍ରୟୋଗ କରି, ଦେଶସେବା ଓ ଜନସେବା ଦ୍ୱାରା ବିପୁଳ ଖ୍ୟାତି ଅର୍ଜନ କରିଅଛ । ତାତ୍ତ୍ୱିକ ବିଚାରରେ ଏହା ଅଳ୍ପ ସମାଜର ଦାୟିତ୍ୱବୋଧର ଦ୍ୟୋତକ ନୁହେଁ ।

ଭଞ୍ଜ ସାହିତ୍ୟରେ ନାରୀ ଚରିତ୍ରର ପ୍ରାଚୁର୍ଯ୍ୟ ଦେଖି ଯେଉଁମାନେ ଭଞ୍ଜଭାରତୀର ନାରୀଚରିତ୍ର ସର୍ବସ୍ୱତା' ଉପଲବ୍ଧି କରନ୍ତି ସେମାନଙ୍କ ପାଇଁ ଗୋଟିଏ ଗଳ୍ପ ଏଠାରେ ଦିଆଯାଇପାରେ । ଗୋଟିଏ ଗାଁରେ ରାମବାବୁଙ୍କର ଗୋଟିଏ ମାତ୍ର ପୁଅ ଅଥଚ ତାଙ୍କର ପ୍ରତିବେଶୀ ହରିବାବୁଙ୍କର ପୁଅ ସଂଖ୍ୟା ଦଶ । ସମସ୍ତଙ୍କର ବିବାହ ସରିବା ପରେ ସେହି ଗାଁର ଜଣେ ଲୋକ କହିଲା, "ମୁଁ ଦେଖୁଛି, ହରିବାବୁଙ୍କର ନାରୀ ପ୍ରୀତି ଅଧିକ । କାହିଁକିନା, ଗୋଟି ଗୋଟି କରି ଦଶଗୋଟି ଯୁବତୀ ଝିଅ ତାଙ୍କ ଘରକୁ ସେ ନେଲେଣି । ଅଥଚ ରାମବାବୁ ମାତ୍ର ଗୋଟିଏ ଯୁବତୀଝିଅ ତାଙ୍କ ଘରକୁ ନେଇଛନ୍ତି ।

କହିବା ଅନାବଶ୍ୟକ ଯେ, ଏହି ମନ୍ତବ୍ୟ ଯେପରି ନିର୍ବୁଦ୍ଧିତାର ମହତ୍ତ୍ୱମଣିରେ ମଣ୍ଡିତ ହୋଇଅଛି । ବହୁ କାବ୍ୟର ପ୍ରଣେତା ଉପେନ୍ଦ୍ର ଭଞ୍ଜଙ୍କର ଲେଖାରେ ବହୁ ନାରୀଙ୍କର ସମାବେଶ ଭିତ୍ତିକ ସାଧାରଣ

ଆକ୍ଷେପ ହେଉଥିଲା ଏକାବେଳକେ ହାସ୍ୟୋଦ୍ଦୀପକ ଯେ ବହୁ ପ୍ରମୋଦ କାବ୍ୟର ପ୍ରଣେତା, ସେ ବହୁ ନାୟିକାର ଚଟକର ହେବା ତ ସ୍ୱାଭାବିକ ।

ତେବେ ଏଣ୍ ହଟେ, କବିର ସାମାଜିକ ଦାୟିତ୍ୱବୋଧ ଦୃଷ୍ଟିରୁ ଭଞ୍ଜୀୟ ମନୀଷା କେତେଦୂର ଅଭିନନ୍ଦନୀୟ ହୋଇପାରେ, କବି ଓ ସାହିତ୍ୟ-ସ୍ରଷ୍ଟା ବାସ୍ତବତାର ଚିତ୍ରଣ କରନ୍ତି । କିନ୍ତୁ କେବଳ ସେତିକିରେ କର୍ତ୍ତବ୍ୟ ସମାପନ ହୁଏ ନାହିଁ । ପାଠକ ସମାଜକୁ ସୁସ୍ଥ, ସବଳ ଏବଂ ସଚ୍ଚରିତ୍ର କରି ଗଢ଼ିବା ଦିଗରେ ମଧ୍ୟ ତାହାର ଲେଖନୀ ବିଶ୍ୱସାହିତ୍ୟରେ ଅଭିନନ୍ଦିତ ହୋଇରହିଛି । ରାମାୟଣର ସୀତା ଏବଂ ମହାଭାରତୀୟ ବିବିଧ ଉପାଖ୍ୟାନ ସୂଚକ କାବ୍ୟମାନଙ୍କର ନାୟିକା ସମୂହ ସେମାନଙ୍କର ଭୌତିକ ରୂପ ସମ୍ପଦ ଲାଗି ନୁହେଁ, ଆଧ୍ୟାତ୍ମିକ ଉତ୍କର୍ଷ ମାନସିକ ମହତ୍ତ୍ୱ ତଥା ନୈତିକଗୁଣ ସମ୍ପଦ ଲାଗି ଜନମାନସରେ ତରଙ୍ଗ ଭଙ୍ଗ କରିଅଛନ୍ତି । ଭଞ୍ଜ ଯଦିଓ ଏ ଦେଶର କୋଟି କୋଟି ରସଗ୍ରାହୀ ଶ୍ରୋତା ପାଠକମାନଙ୍କ ଲାଗି ଶ୍ରବ୍ୟ-କାବ୍ୟର ଯେଉଁ ଶବ୍ଦକୋଣାର୍କ ନିର୍ମାଣ କରିଯାଇଛନ୍ତି, ତହିଁରେ ନାରୀ ଚରିତ୍ରର ଭୂମିକା ଏହି ଦୃଷ୍ଟିରୁ ନିରୂପଣୀୟ । କହିବା ବାହୁଲ୍ୟ ଯେ, ଭଞ୍ଜଙ୍କର ବିଭିନ୍ନ କାବ୍ୟରେ ନାରୀଚରିତ୍ରର ରସପ୍ରବଣତା ରହିଅଛି କିନ୍ତୁ ପ୍ରଗଲ୍‌ଭତା ନାହିଁ । ନାରୀର ଚିନ୍ତା ଏବଂ କର୍ମରେ ପ୍ରାଣ ପ୍ରାଚୁର୍ଯ୍ୟର ପ୍ରଖରତା ରହିଅଛି । କିନ୍ତୁ ସେ କେଉଁଠାରେ ହେଲେ କୁଳଂକଷା ହୋଇ ନାହିଁ । ତାହାର ଗଭୀର ପ୍ରେମର ଅସୀମତା ଅଛି କିନ୍ତୁ ଅସଂଗତ ସ୍ଥାନ ପାଇନାହିଁ । ଯେଉଁ ପାଠକ ଭଞ୍ଜୀୟ ନାରୀମାନଙ୍କର ପ୍ରେମିକତା ଉପଲବ୍ଧି କରନ୍ତି ସେମାନେ ଏକଥା ମଧ୍ୟ ଲକ୍ଷ୍ୟ କରିବା ଉଚିତ ଯେ, ସେହି ପ୍ରେମର ନିବେଦନ ହୋଇଅଛି, ଗୁପ୍ତକକ୍ଷରେ ଏବଂ ନିଜର ଧର୍ମପତ୍ନୀ ନିକଟରେ, ଭଞ୍ଜୀୟ ନାରୀ ଅର୍ଦ୍ଧନାରୀଶ୍ୱର-କଳ୍ପନାର ଗୌରୀ, କିନ୍ତୁ ଇତର ପୁରୁଷ ନିକଟରେ ସେ ହେଉଛି ଚଣ୍ଡୀ । ତାହାଠାରୁ ସର୍ବତ୍ର ପ୍ରକାଶ ପାଇଛି, ଧୈର୍ଯ୍ୟଶୀଳତା ସ୍ନେହଶୀଳତା, ଦେବଦେବୀଙ୍କଠାରେ ଭକ୍ତିଶୀଳତା, ଗୁରୁଜନମାନଙ୍କ ପ୍ରତି ସମ୍ମାନଶୀଳତା, ପରିସ୍ଥିତିର ଅନୁରୂପ କର୍ତ୍ତବ୍ୟ ପରାୟଣତା ତଥା ସ୍ୱାମୀଙ୍କ ପ୍ରତି ଅଟଳ, ଅନାବିଳ ଅତ୍ୟଧିକ ପ୍ରୀତିପରାୟଣତା ଭଞ୍ଜେ ତାଙ୍କର ନାରୀ ସଂସାରର ରାଜପଥର ଧାରେ ଧାରେ ଏସବୁ ବ୍ୟବହାରିକ ସଂପଦର ଆଲୋକ ସ୍ତମ୍ଭମାନ ସ୍ଥାପନ କରିଯାଇଛନ୍ତି । ଏତେ ସତ୍ତ୍ୱେ ଯଦି କେହି କହେ, ଭଞ୍ଜ ସାହିତ୍ୟରେ ନାରୀର କୌଣସି ଆଦର୍ଶ ନାହିଁ କିମ୍ବା

ଅବତାର ନାହିଁ, ତାହାହେଲେ ଦାର୍ଶନିକ ସ୍ପିନୋଜାଙ୍କ ଭାଷାରେ କୁହାଯାଇପାରିବ, ହେ ପ୍ରିୟ ପାଠକ ! ଦେଖ ମୋର ଏସବୁ ଗ୍ରନ୍ଥ ଉପରକୁ ତୁମେ ଦୃଷ୍ଟି ପକାଇବା ପରେ ମଧ୍ୟ ଯଦି ତୁମେ ତୃପ୍ତ ହେଲ ନାହିଁ, ତାହାର ଏକମାତ୍ର କାରଣ ନୁହେଁ ଯେ ମୋ ଗ୍ରନ୍ଥରେ ପାଠକଙ୍କୁ ତୃପ୍ତି ଦେଲାଭଳି କିଛି ଜିନିଷ ନାହିଁ । ଏକଥା ନିଶ୍ଚିତ ଯେ ଗୋଟିଏ ବଡ଼ ଦର୍ପଣ ଆଗରେ ଠିଆହୋଇ ଗୋଟିଏ ଅପ୍ସରା ତାକୁ ଯଦି ଚାହେଁ, ତେବେ ଦର୍ପଣ ଭିତରେ ଗୋଟିଏ ସୁନ୍ଦର ମୁହଁ ଦେଖାଯିବ । କିନ୍ତୁ ଯଦି ଗୋଟିଏ ଗଧ ସେହି ଦର୍ପଣ ଭିତରକୁ ଚାହେଁ, ତାହା ଭିତରୁ ସୁନ୍ଦର ମୁହଁଟିଏ ବାହାରିବ କିପରି ?

ଅଳମତି ବିସ୍ତରେଣ

—o—

# ତାରକମନ୍ତ୍ର ସିଦ୍ଧ କବି ଉପେନ୍ଦ୍ର

ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ,
ଏମ୍. ଏ., ଡି. ଲିଟ୍
ପ୍ରାଧ୍ୟାପକ, ଓଡ଼ିଆ ବିଭାଗ ସମ୍ବଲପୁର ବିଶ୍ୱବିଦ୍ୟାଳୟ

ଉପରେ ଅନନ୍ତ ନୀଳିମାମୟ ଆକାଶର ଅସୀମ ବ୍ୟାପ୍ତି, ତଳେ [illegible] ପୃଥିବୀର ଅପରୂପ ଲାବଣ୍ୟମୟ ରୂପଶୋଭାର ଅସରନ୍ତି ଭଣ୍ଡାର— ଏହି ପରିପ୍ରେକ୍ଷୀରେ କ୍ଷୁଦ୍ରାତିକ୍ଷୁଦ୍ର ମଣିଷର ଜୀବନ ନିରବଧି କାଳ ବକ୍ଷରେ ନିତାନ୍ତ ନଗଣ୍ୟ ଓ ବୁଦ୍‌ବୁଦୋପମ ପୃଥିବୀ ପୃଷ୍ଠରେ ଏକାନ୍ତ ତୁଚ୍ଛ ଏବଂ ଅବହେଳାର ସାମଗ୍ରୀ । ମନୁଷ୍ୟ କିନ୍ତୁ ଯୁଗେ ଯୁଗେ ପୃଥିବୀର ବିପୁଳତାକୁ ଓ କାଳର ନିରବଧି ସ୍ରୋତକୁ ସ୍ୱୀକାର କରିବାକୁ କୁଣ୍ଠାବୋଧ କରି ଆସିଅଛି । ଆପଣା ଜୀବନର କ୍ଷୁଦ୍ରତା ଓ ନଗଣ୍ୟତାକୁ ଭୁଲିଯାଇ ସେ ସର୍ବଦା ଉଦ୍ୟମ କରିଆସିଛି ଜୀବନର ମହିମାଗାନ କରିବା ଲାଗି । ମାନବର ସର୍ବୋତ୍ତମ ପରିପ୍ରକାଶ ସାହିତ୍ୟରେ ତେଣୁ ଜୀବନକୁ ଏତେ ବେଶି ମହିମାନ୍ୱିତ ରୂପ ପ୍ରଦାନ କରାଯାଇଅଛି । ସାହିତ୍ୟ ହୋଇ ଉଠିଛି ଜୀବନାଶ୍ରୟୀ । ଜୀବନର ଐନ୍ଦ୍ରିକ ଅଥବା ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତିଗୁଡ଼ିକୁ ଉପଜୀବ୍ୟ କରି ସାହିତ୍ୟର କଳେବର ଯୁଗେ ଯୁଗେ ସ୍ଫୀତ ହୋଇ ଉଠିଛି । ମାନବ-ଜୀବନ ଏହାର ଉପାଦାନ ହେଲେ ହେଁ ଜୀବନ ବିକାଶର ପ୍ରକାଶ ରୂପେ ଏହାର ରୂପଶ୍ରୀ ମଣିଷର ଚିତ୍ତ ବୃତ୍ତିକୁ କାଳେ କାଳେ ସନ୍ତୋଷ ପ୍ରଦାନ କରି ଆସିଅଛି । ଜୀବନ ତେଣୁ ହୋଇ ଉଠିଛି ସାହିତ୍ୟାଭିମୁଖୀ । ଏହି କାରଣରୁ ଜୀବନ ବଞ୍ଚିବାର ଏକ ଉତ୍କୃଷ୍ଟ କଳା ବା ମାଧ୍ୟମ ରୂପେ ସାହିତ୍ୟକୁ ସ୍ୱୀକାର କରାଯାଇଅଛି । ଆଲୋଚ୍ୟ ଶତ-ଯୁଗୀୟ ବିଶାଳ କାବ୍ୟ-ସାହିତ୍ୟର ମୂଳ ଦେଶରେ ଏହି ଆଭିମୁଖ୍ୟ ଅନିବାର୍ଯ୍ୟତଃ ବର୍ତ୍ତମାନ ।

'ସାହିତ୍ୟ' ଶବ୍ଦର ଅର୍ଥ—ମିଳନ । ଅର୍ଥାତ୍ ଶବ୍ଦ ଓ ଅର୍ଥର ମିଳନକୁ 'ସାହିତ୍ୟ କୁହାଯାଏ ଓ (୧) ଶବ୍ଦାର୍ଥର ସଂଯୋଗ ବିନା ସାହିତ୍ୟ

ସମ୍ଭବ ନୁହେଁ । ଏହି ଶବ୍ଦାର୍ଥ ଯୋଗ ବା ମିଳନ ଅତୀତ ସହିତ ବର୍ତ୍ତମାନର, ଇନ୍ଦ୍ରିୟ ସହିତ ଅତୀନ୍ଦ୍ରିୟର, ନିକଟ ସହିତ ଦୂରର, ମନ ସହିତ ପ୍ରାଣର, ଜୀବାତ୍ମା ସହିତ ପରମାତ୍ମାର ସଂଯୋଗକୁ ହିଁ ସୂଚୀତ କରିଥାଏ । ଅତଏବ ଶବ୍ଦାର୍ଥ-ଯୋଗ ଏକ ଅଲୌକିକ ବସ୍ତୁ । ଶବ୍ଦ ଓ ଅର୍ଥର ସମ୍ବନ୍ଧ ଏକ ନିରବଚ୍ଛିନ୍ନ ଧାରାରେ ଗ୍ରଥିତ । ଶବ୍ଦ ଅର୍ଥକୁ ଓ ଅର୍ଥ ଶବ୍ଦକୁ ଛାଡ଼ି ମୁହୂର୍ତ୍ତେ ସୁଦ୍ଧା ରହିପାରେ ନାହିଁ । ଏହି ଉଭୟ ସମ୍ବନ୍ଧ ନିତ୍ୟ ଓ ଅଭିନ୍ନ । ନାମ-ନାମୀ ବା ଶବ୍ଦ-ଅର୍ଥ— ଏ ଉଭୟେ ଭିନ୍ନ ହେଲେ ମଧ୍ୟ ଅଭିନ୍ନ । (୨) ଅଗ୍ନି ଓ ତା'ର ଦାହିକା-ଶକ୍ତି ଯେପରି ପୃଥକ ବସ୍ତୁ ନୁହନ୍ତି, ସେହିପରି ଶବ୍ଦ ଓ ଅର୍ଥ ମଧ୍ୟରେ ଏକ ନିଗୂଢ଼ ତାଦାତ୍ମ୍ୟ ସଂପର୍କ ସୁପ୍ରତିଷ୍ଠିତ । ଏହି କାରଣରୁ ଶବ୍ଦକୁ 'ବ୍ରହ୍ମ' ନାମରେ ନାମିତ କରାଯାଇଅଛି । ନିଖିଳ ବିଶ୍ୱର ବ୍ୟବହାରର କାରଣ ସକଳ ଭାବର ପ୍ରକାଶକ ଓ ସର୍ବବ୍ୟାପକ ରୂପେ ଶବ୍ଦର ମହିମା ଗାନ କରାଯାଇଅଛି । ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ ସୃଷ୍ଟିର ଆରମ୍ଭରୁ ଯଦି ଶବ୍ଦ ବ୍ରହ୍ମର ଜ୍ୟୋତି ପ୍ରକଟିତ ହୋଇ ନଥାନ୍ତା ତେବେ ଏହି ଅଖିଳ ବ୍ରହ୍ମାଣ୍ଡ ପ୍ରଚଣ୍ଡ ସୂର୍ଯ୍ୟର ଉପସ୍ଥିତିରେ ମଧ୍ୟ ଗାଢ଼ ଅନ୍ଧକାରର ଅତଳ ଗହ୍ୱରରେ ବିଲୀନ ହୋଇ ରହିଥାନ୍ତା । ୩ ।

---

୧] କ] "ସହିତୟୋଃ ମିଳିତୟୋଃ ଶବ୍ଦାର୍ଥୟୋଃ ଭାବଃ ସାହିତ୍ୟମ୍"
ଖ] "ତୁଲ୍ୟଚେନ ସହ ବର୍ତ୍ତମାନୌ ହାନ୍ଦ୍ରତୌ ସହିତୟୋଃ
ଶବ୍ଦାର୍ଥୟୋଃ ଭାବଃ ସାହିତ୍ୟମ୍"—[ସା: ଦ:]

୨] ଅଭେଦ ନାମ ନାମୀ ଅଛି ଭେଦରେ
ଏ ଅଧ୍ୟାହାରୁ ଅଛି ମୁଁ ନିବେଦନେ [ଚ:ଚ]
ବଙ୍ଗୀୟ ପଦାବଳୀରେ ମଧ୍ୟ ଅନୁରୂପ ମତ ପରିଦୃଷ୍ଟ —
ଯେଇ ନାମ ସେଇ କୃଷ୍ଣ ଭଜ ନିଷ୍ଠା କରି
ନାମେର ସହିତ ଆଛେନ ଆପନି ଶ୍ରୀହରି ।
[ଦୋବଳୀ ସଂଗ୍ରହ]

୩] ଇଦମନ୍ଧତମଃ କୃତ୍ସ୍ନଂ ଜାୟେତ ଭୁବନତ୍ରୟମ୍
ଯଦି ଶବ୍ଦାହ୍ୱୟଂ ଜ୍ୟୋତିରାସଂସାରଂ ନ ଦୀପ୍ୟତେ ।
[କାବ୍ୟାଦର୍ଶ — ୧।୪]

ଭକ୍ତ ମାତ୍ରେ ଏହି ବେଦ-ବ୍ରହ୍ମର ଉପାସକ । ମାନବର ସକଳ ଚିନ୍ତା, ଜ୍ଞାନ ବିଜ୍ଞାନର ସମସ୍ତ ଉପାଦାନ ଏବଂ ତାହାର ଚୈତନ୍ୟ-ପୁରୁଷକୁ ପ୍ରକଟିତ କରୁଥିବା 'ଶବ୍ଦ-ବ୍ରହ୍ମ' ଏକ ଅଦ୍ଭୁତ ଏବଂ ଅଲୌକିକ ବସ୍ତୁ । ଏହା ସର୍ବାର୍ଥର ପ୍ରକାଶକ ଏବଂ ଏହି ଶବ୍ଦ-ବ୍ରହ୍ମ ହିଁ ସାହିତ୍ୟର ଶରୀର ରୂପେ ସ୍ୱୀକୃତ ହୋଇଅଛି । ଏ ସଂପର୍କରେ ଉପନିଷଦର ବାଣୀ ଅଛି ସ୍ପଷ୍ଟ—ବେଦ ବ୍ରହ୍ମରେ ନିଷ୍ଣାତ ପରଂବ୍ରହ୍ମ ହିଁ ସକଳ ସୃଷ୍ଟିର ମୂଳାଧାର । (୪) ପରଂବ୍ରହ୍ମ ନିର୍ଗୁଣାତ୍ମକ । ଶବ୍ଦ ବ୍ରହ୍ମ ମଧ୍ୟ ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା ଭେଦ ହେତୁରେ ତ୍ରିଧା ବିଭକ୍ତ । ବାଚକ ଶବ୍ଦ, ଲକ୍ଷକ ଶବ୍ଦ ଓ ବ୍ୟଞ୍ଜକ ଶବ୍ଦ ଏକ ଅଖଣ୍ଡ ଶବ୍ଦର ନାମାନ୍ତର ମାତ୍ର । ବାଚକ ଶବ୍ଦ ବାଚ୍ୟାର୍ଥକୁ, ଲକ୍ଷକ ଶବ୍ଦ ଲକ୍ଷ୍ୟାର୍ଥକୁ ଏବଂ ବ୍ୟଞ୍ଜକ ଶବ୍ଦ ବ୍ୟଙ୍ଗ୍ୟାର୍ଥକୁ ପ୍ରକାଶ କରିଥାନ୍ତି । ପ୍ରଚଳିତ ସମସ୍ତ ତଥ୍ୟବାଚକ ଶବ୍ଦ ଯୋଗରେ ରୂପାୟିତ । —ତେଣୁ ସେ ସବୁର ସ୍ୱରୂପ ପରିମିତ ଶବ୍ଦ ଓ ଅର୍ଥର ସମ୍ବନ୍ଧ ଜ୍ଞାନରେ ପର୍ଯ୍ୟବସିତ । ଅତଏବ କୋଷ, ଦର୍ଶନ, ଇତିହାସ, ବ୍ୟାକରଣ, ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର ପ୍ରଭୃତିରେ ଲକ୍ଷକ ଓ ବ୍ୟଞ୍ଜକ ଶବ୍ଦମାନଙ୍କର ପ୍ରୟୋଗ କରାଯାଏ ନାହିଁ । ଅନ୍ୟ ପକ୍ଷରେ ସାହିତ୍ୟର ଗଠନ ଟିକେ କିନ୍ତୁ ଭିନ୍ନ ଧାରାରେ । କେବଳ ବାଚକ ଶବ୍ଦ ଓ ବାଚ୍ୟାର୍ଥର ପ୍ରୟୋଗରେ ସାହିତ୍ୟର ଶରୀର ଗଠିତ ନୁହେଁ । ସାହିତ୍ୟ କେବଳ ବାଚକ ଶବ୍ଦକୁ ଓ ବାଚ୍ୟାର୍ଥର ଜ୍ଞାନକୁ ଅପେକ୍ଷା କରେ ନାହିଁ । ସେ ଅପେକ୍ଷା କରେ ବୋଧର ମୌଳିକ ଶକ୍ତିକୁ । ମାନବର ସୂକ୍ଷ୍ମତମ ପ୍ରଜ୍ଞାର ପ୍ରକାଶ ଯେଉଁ ବୋଧରେ ନିହିତ ନଥାଏ ତାହା ସାହିତ୍ୟ ବା କାବ୍ୟ ପଦ ବାଚ୍ୟ ନୁହେ । କ୍ରୌଞ୍ଚ ଅନ୍ତରର ରବ ଓ ବାଲ୍ମୀକିଙ୍କ ହୃଦୟର ଅନ୍ତର୍ନିହିତ ରହସ୍ୟ ଜ୍ଞାନ ଉପରେ ସାହିତ୍ୟର ଭିତ୍ତି ପ୍ରତିଷ୍ଠିତ । କେବଳ ଶୁଣାଏ ଯେ ଉଚ୍ଚାରଣ କଲେ କବିତା ବା ସାହିତ୍ୟ ହୁଏ ନାହିଁ । ସ୍ୱର, ଭାବନା ଓ ଅନୁଭୂତିହୀନ ନିରର୍ଥକ ବେଦ ଉଚ୍ଚାରଣ କରୁଥିବା ମନୁଷ୍ୟ ଯେପରି ପାଠକ ବୋଲି ଅଭିହିତ ହୁଏ, ସାହିତ୍ୟ ମଧ୍ୟ ସେହିପରି ସ୍ୱର, ଭାବନା ଓ ଅନୁଭୂତିହୀନ ଶବ୍ଦାବଳୀ ମାତ୍ରରେ ପର୍ଯ୍ୟବସିତ ନୁହେଁ । ଧ୍ୱନି ତାର ଆନନ୍ଦବର୍ଦ୍ଧନ ତେଣୁ କହନ୍ତି—

---

୪) ଶବ୍ଦ-ବ୍ରହ୍ମଣି ନିଷ୍ଣାତଃ ପରଂବ୍ରହ୍ମାଧି ଗଚ୍ଛତି—ମୈତ୍ରୋପନିଷଦ

ଭାବ, ଭାବନା ଓ ଚମତ୍କାରପୂର୍ଣ୍ଣ ବାଞ୍ଛିତ-ଶବ୍ଦ ଅଥବା ବାକ୍ୟାର୍ଥର ଯୋଗର ନାମ ହିଁ ସାହିତ୍ୟ (୫)। ଶବ୍ଦ, ଅର୍ଥ ଓ ଭାବର ଚମତ୍କାର ମିଳନ ଯେଉଁଠାରେ ପରିଲକ୍ଷିତ ହୁଏ, ପ୍ରାଚୀନ ମାନଙ୍କ ମତରେ ତାହା ହିଁ ଉତ୍ତମ କାବ୍ୟ । ଉତ୍ତମ କାବ୍ୟର ଏହି ସଂଜ୍ଞା ପ୍ରତ୍ୟେକ ଯୁଗର ସାହିତ୍ୟ ପକ୍ଷେ ଏକାନ୍ତ ଭାବରେ ପ୍ରଯୁଜ୍ୟ । ଭଞ୍ଜ ପ୍ରମୁଖ କବିଗଣ ସାହିତ୍ୟରେ ଏହି ଶବ୍ଦାର୍ଥ-ମିଳନ ପ୍ରତି ଲକ୍ଷ୍ୟ ପଦେ ପଦେ ଦୃଷ୍ଟି ରଖି ଓଡ଼ିଆ କାବ୍ୟ-ସାହିତ୍ୟର କାରୁକାର୍ଯ୍ୟ-ଖଚିତ ରତ୍ନ ପ୍ରାସାଦ ନିର୍ମାଣ କରିଅଛନ୍ତି । ତେଣୁ ଭକ୍ତ-କବିର ଦୁର୍ନିରୀକ୍ଷ ଅନ୍ତର୍ଦୃଷ୍ଟି ଓ ଭାଷାର ସୌନ୍ଦର୍ଯ୍ୟ ବୋଧ ଶବ୍ଦାର୍ଥର ଗଠନ ଏବଂ ଚମତ୍କାରିତାପୂର୍ଣ୍ଣ ମିଳନ ପ୍ରତି ସର୍ବଦା ସଚେତନ ଦୃଷ୍ଟି ନିକ୍ଷେପ କରିଅଛନ୍ତି ।

ମନୁଷ୍ୟ ହୃଦୟରେ ପାରିପାର୍ଶ୍ୱିକ କାରଣରୁ ସମୟ ବିଶେଷରେ ସୁଖ, ଦୁଃଖ, ଭୟ, କ୍ରୋଧ, ଘୃଣା ଓ ବିସ୍ମୟାଦି ଯେଉଁସବୁ ଭାବାନୁଭୂତିରେ ପ୍ରକାଶ ଘଟେ, ସେହି ସେହି ଅନୁଭୂତିଗୁଡ଼ିକ ସହିତ ସମ୍ବନ୍ଧିତ ଯେଉଁ ଭାବନାର ସୃଷ୍ଟି ହୁଏ, ତାହାକୁ ଆଳଂକାରିକମାନେ 'ଭାବ' ନାମରେ ନାମିତ କରିଅଛନ୍ତି ୬) ଚିତ୍ତ ବିକାର ହେତୁକ ଏକ ପ୍ରକାର ବୋଧର ନାମ ଭାବ । ଏହି ଭାବଗୁଡ଼ିକର ସଂଖ୍ୟା ନଅଟି ବୋଲି ସିଦ୍ଧାନ୍ତ କରାଯାଇଛି । (୭) ଏହି ନଅଟି ଭାବର ନାମ 'ସ୍ଥାୟୀ ଭାବ' ରୂପେ ନାମିତ ହୋଇଅଛି ଏବଂ ଏହି ନଅଟି ସ୍ଥାୟୀ ଭାବ ହିଁ ନବ ରସରେ ପରିଣତ ହୁଏ ବୋଲି ବ୍ୟବସ୍ଥା ଦିଆଯାଇଅଛି । ୮) ଏହି ନଅ ପ୍ରକାରର

---

(୫) ଶବ୍ଦାର୍ଥ ଶାସନ ଜ୍ଞାନ ମାତ୍ରେଣୈବ ନ ବେଦ୍ୟତେ
ବେଦ୍ୟତେ ସତୁ କାବ୍ୟାର୍ଥ ତତ୍ତ୍ୱଜ୍ଞୈରେବ କେବଳମ୍ ।

(୬) ସୁଖ ଦୁଃଖାଦିଭିର୍ଭାବୈଃ ଭାବସ୍ତଦ୍‌ଭାବ ଭାବନମ୍ (ସା:ଦ:)

(୭) ରତିର୍ହାସଶ୍ଚ ଶୋକଶ୍ଚ କ୍ରୋଧୋତ୍ସାହୌ ଭୟଂ ତଥା
ଜୁଗୁପ୍ସା ବିସ୍ମୟଶ୍ଚେତ୍ଥମଷ୍ଟୌ ପ୍ରୋକ୍ତାଃ ଶମୋଽପି ଚ (ସା:ଦ:)

(୮) ଅଖଣ୍ଡାନନ୍ଦଚିଦ୍ରୂରସତାଂ ପ୍ରତିପଦ୍ୟତେ,
ଆସ୍ୱାଦ୍ୟମାନ୍ୟେ ଯୋଗ୍ୟଃ ସ୍ଥାୟୀତି ନିଗଦ୍ୟତେ (ସା:ଦ:)

ସ୍ଥାୟୀ ଭାବର ପୋଷକ ଭାବମାନଙ୍କୁ ସଞ୍ଚାରୀ ଭାବ ନାମକରଣ କରାଯାଇଛି । [୯] ସଞ୍ଚାରୀ ଭାବଗୁଡ଼ିକ ପୂର୍ବୋକ୍ତ ନଅ ପ୍ରକାରର ଭାବସମୁଦ୍ରରେ ତରଙ୍ଗ ଭଙ୍ଗ କରି କ୍ରୀଡ଼ା କରୁଥାନ୍ତି । ସଞ୍ଚାରୀ ଭାବଗୁଡ଼ିକର ସଂଖ୍ୟା ତେତିଶ ବୋଲି ସ୍ୱୀକାର କରାଯାଇଛି । ଏହି ତେତିଶ ପ୍ରକାରର ଭାବ ମଣିଷର ବାସନାମୟ ମନର ବିକାର ମାତ୍ର । ଆଲମ୍ବନ ଓ ଉଦ୍ଦୀପନ ବିଭାବ ବଳରେ ସ୍ଥାୟୀ ଭାବଗୁଡ଼ିକ ପରିପୁଷ୍ଟ ହେଲା ପରେ ଭାବୁକର ଶରୀରରେ ଯେଉଁସବୁ ସାତ୍ତ୍ୱିକ ବିକାରମାନ ଦେଖାଯାଏ, ସେ ସବୁକୁ ଅନୁଭାବ ନାମରେ ଅଭିହିତ କରାଯାଇଅଛି । [୧୦] ଏ ଗୁଡ଼ିକ ଯଥାର୍ଥରେ ପ୍ରକୃତ ହୃଦଗତ ଭାବର ଅବବୋଧକ । ଅନୁଭାବର ସଂଖ୍ୟା ଗୁଣି ଆଠଗୋଟି ବୋଲି ନିରୂପଣ କରାଯାଇଛି । (୧୧) ତେତିଶ ପ୍ରକାରର ସଂଚାରୀ ଭାବର ଯଥାଯଥ ସହାୟତା ବଳରେ ପୂର୍ବୋକ୍ତ ନଅ ପ୍ରକାର ସ୍ଥାୟୀ ଭାବ, ଅଷ୍ଟବିଧ ଅନୁଭାବ ଦ୍ୱାରା ପ୍ରକଟିତ ହୋଇ ଏବଂ ଦୁଇଟି ବିଭାବ ଦ୍ୱାରା ପରିପୁଷ୍ଟ ହୋଇ ଯେଉଁ ନଅଟି ବୋଧ ମହାର୍ଘ ସୃଷ୍ଟି କରନ୍ତି. ତାହାହିଁ ସାହିତ୍ୟ-ଶାସ୍ତ୍ରରେ 'ନବରସ' ନାମରେ ପରିଚିତ [୧୨] ଉକ୍ତ ନଅଟି ରସର ଲକ୍ଷ୍ୟ କଣ ? ଆଲଂକାରିକମାନେ ଏ ସଂପର୍କରେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ଏବଂ ଚମତ୍କାରିତାକୁ ହିଁ ଉକ୍ତ ରସ ସମୂହର ଲକ୍ଷ୍ୟ ରୂପେ ଅଭିହିତ କରିଅଛନ୍ତି । ଆଳଂକାରିକ ଧର୍ମଦତ୍ତଙ୍କ ମତରେ ସମସ୍ତ ରସର ସାର ରୂପେ ଚମତ୍କାରିତାକୁ ଅନୁଭବ କରାଯାଇଥାଏ । [୧୩]

---

(୯) ବିଶେଷ୍ୟଦାଭିମୁଖ୍ୟେନ ଚରଣାଦ୍ ବ୍ୟଭିଚାରିଣଃ
ସ୍ଥାୟିନ୍ୟୁନ୍ମଗ୍ନନିର୍ମଗ୍ନାଃ କଲ୍ଲୋଳା ଇବ ବାରିଧୌ । (ସା:ଦ)

(୧୦) ନାନାଭିନୟ ସମ୍ବନ୍ଧାନ ଭାବୟନ୍ତି ରସାନ୍ ଯତଃ
ତସ୍ମାଦ୍ ଭାବା ଅମୀ ପ୍ରୋକ୍ତାଃ ସ୍ଥାୟି ସଞ୍ଚାରି ସାତ୍ତ୍ୱିକାଃ ।

(୧୧) ସ୍ତମ୍ଭଃ ସ୍ୱେଦୋଽଥ ରୋମାଞ୍ଚଃ ସ୍ୱରଭଙ୍ଗୋଽଥ ବେପଥୁଃ
ବୈବର୍ଣ୍ଣ୍ୟ ମଶ୍ରୁ ପ୍ରଳୟଃ ଇତ୍ୟଷ୍ଟୌ ସାତ୍ତ୍ୱିକା ସ୍ମୃତା (ସା:ଦ:)

(୧୨) ଶୃଙ୍ଗାର ହାସ୍ୟ କରୁଣ ରୌଦ୍ରବୀର ଭୟାନକାଃ
ବୀଭତ୍ସୋଽଦ୍ଭୁତ ଇତ୍ୟଷ୍ଟୌ ରସାଃ ପ୍ରୋକ୍ତାଃ ଶମୋଽପି ଚ ।

(୧୩) ରସେ ସାରଃ ଚମତ୍କାରଃ ସର୍ବତ୍ରାପ୍ୟନୁଭୂୟତେ
ତଚ୍ଚମତ୍କାର ସାରତ୍ୱେ ସର୍ବତ୍ରାପ୍ୟଦ୍ଭୁତୋ ରସଃ ।

ତେଣୁ ପ୍ରତ୍ୟେକ ରସ ଏକ ଚମତ୍କାର ଭାବକୁ ହିଁ ପ୍ରତିଫଳିତ କରେ । ଚମତ୍କାରିତା ହିଁ କାବ୍ୟ-ଦେହର ମୂଳତତ୍ତ୍ୱ । ଭାବୁକ ରସିକ ବ୍ୟକ୍ତିର ସାତ୍ତ୍ୱିକ ଭାବପୂର୍ଣ୍ଣ ହୃଦୟରେ ଭାବନାର ପନ୍ଥାକୁ ଅତିକ୍ରମ କରି ଯେଉଁ ଭାବର ସାର ରୂପ ଚମତ୍କାରିତା ଆସ୍ୱାଦିତ ହୁଏ ତାହାର ନାମ ହିଁ ରସ, (୧୪) । ପଣ୍ଡିତ ରାଜ ଜଗନ୍ନାଥ କାବ୍ୟ-ରସର ଏହି ଚମତ୍କାରିତାକୁ ହିଁ 'ରମଣୀୟତା' ରୂପରେ ନାମିତ କରିଅଛନ୍ତି (୧୫) । ବିଶ୍ୱନାଥ କବିରାଜ ମଧ୍ୟ ରସର ବିଶ୍ଳେଷଣ ସମ୍ପର୍କରେ କାବ୍ୟ ରସର ବା ସାହିତ୍ୟର ମୂଳ ତତ୍ତ୍ୱ ରୂପେ ଏହି ଚମତ୍କାରିତା ବା ରମଣୀୟତାକୁ ଗୁରୁତ୍ୱ ଆରୋପ କରିଛନ୍ତି । କାବ୍ୟ ପାଠକର ଅନ୍ତଃକରଣରେ ରଜୋଗୁଣ ଓ ତମୋଗୁଣକୁ ଦୂର କରି ସ୍ୱଚ୍ଛ ସୁନ୍ଦର ସାତ୍ତ୍ୱିକ ଗୁଣ ପ୍ରକାଶିତ ହେଲେ ଅଖଣ୍ଡ, ଅଦ୍ୱିତୀୟ ଆନନ୍ଦମୟ, ଚିନ୍ମୟ ତଥା ସ୍ୱୟଂ-ପ୍ରକାଶ ରସର ସାକ୍ଷାତ୍କାର ହୁଏ ବୋଲି ତାଙ୍କର ନିର୍ଦ୍ଦିଷ୍ଟ ମତ ସେ ପ୍ରଦାନ କରିଛନ୍ତି (୧୬) । ରସ-ସାକ୍ଷାତକାର ସମୟରେ ଅନ୍ୟ ବିଷୟର ସ୍ପର୍ଶ ସୁଦ୍ଧା ରହେ ନାହିଁ । ତେଣୁ ଏହା ଲୌକିକୋତ୍ତର ବ୍ରହ୍ମାସ୍ୱାଦ ବା ସମାଧି ତୁଲ୍ୟ । ଏଠାରେ ବ୍ରହ୍ମାସ୍ୱାଦ ପଦରେ ସବିତର୍କ ସମାଧି ଅଭିପ୍ରେତ, ଯହିଁରେ ଆନନ୍ଦ ଓ, ଅସ୍ମିତା ଆଦିର ଆଲମ୍ବନ ରହେ । ନିରାଳମ୍ବ, ନିର୍ବିତର୍କ ସମାଧିର ସମତା ଏଥିରେ ଅବଶ୍ୟ ନଥାଏ । କାରଣ ଏଥିରେ ରସାସ୍ୱାଦ ସମୟରେ ବିଭାବାଦିର ଆଲମ୍ବନ

---

(୧୪) ବ୍ୟକ୍ତିତ୍ୱ ଭାବନାବର୍ତ୍ମ ଯଶ୍ଚମତ୍କାର ସାରଭୂଃ
ହୃଦି ସତ୍ତ୍ୱୋଜ୍ଜ୍ୱଳେ ବାଢ଼ଂ ସ୍ୱଦତେ ସରସଃ ସ୍ମୃତଃ ।

(୧୫) ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍ — ରସଗଙ୍ଗାଧର ।

(୧୬) ସତ୍ତ୍ୱୋଦ୍ରେକାଦ ଖଣ୍ଡ ସ୍ୱପ୍ରକାଶାନନ୍ଦ ଚିନ୍ମୟଃ
ବେଦ୍ୟାନ୍ତର ସ୍ପର୍ଶ ଶୂନ୍ୟଃ ବ୍ରହ୍ମାନନ୍ଦ ସହୋଦରଃ ।
ଲୋକୋତ୍ତର ଚମତ୍କାର ପ୍ରାଣଃ କୈଶ୍ଚିତ ପ୍ରମାତୃଭିଃ
ସ୍ୱାକାର ବଦଭିନ୍ନତ୍ୱେ ନାୟମାସ୍ୱାଦ୍ୟତେ ରସଃ (ସାଃଦ)

ରହିଥାଏ । ରସର ପ୍ରାଣ – ଅଲୌକିକ, ଚମତ୍କାର ଏହି ରସ-ସାକ୍ଷାତକାର ସମସ୍ତଙ୍କର ହୁଏ ନାହିଁ । ପୁଣ୍ୟବନ୍ତ ଯୋଗୀମାନେ କେବଳ ବ୍ରହ୍ମ ସାକ୍ଷାତକାର କଲା ପରି ପୁଣ୍ୟବାନ ଭାବୁକ ବା ସହୃଦୟ ବ୍ୟକ୍ତି ହିଁ ରସ ଆସ୍ୱାଦନ କରିଥାନ୍ତି (୧୭) । ଏହି କାରଣରୁ ଉପନିଷଦରେ ରସକୁ ବ୍ରହ୍ମମୟ ଓ ଆନନ୍ଦମୟ ବୋଲି ନିରୂପଣ କରାଯାଇଛି । (୧୮)

ବ୍ରହ୍ମର ନାମ ହିଁ ରସ । ରସମୟ ବ୍ରହ୍ମଙ୍କୁ ଲାଭ କଲେ ସ୍ୱରୂପରେ ଅବସ୍ଥାନ ରୂପ ଯୋଗଲାଭ କରି ପୁରୁଷ ଆନନ୍ଦମୟ ହୁଏ । ଉପନିଷଦରେ ଏହି କାବ୍ୟ ରସକୁ ପ୍ରଣବ ଓଁକାର ସହିତ ସମାନ ମର୍ଯ୍ୟାଦା ଦିଆଯାଇଅଛି । ଛାନ୍ଦୋଗ୍ୟ ଉପନିଷଦର ବର୍ଣ୍ଣନାନୁସାରେ— ସଙ୍ଗୀତର ରସ ହେଉଛି 'ଉଦ୍‌ଗୀଥ' ବା ବ୍ରହ୍ମବାଚକ ସଙ୍ଗୀତ 'ଓଁକାର' । ଏହି ଓଁକାର ରୂପକ ଅକ୍ଷର ବ୍ରହ୍ମ ହିଁ ସମସ୍ତ ରସମାନଙ୍କ ମଧ୍ୟରେ ପରମ ଓ ଚରମ ରସ (୧୯) ଏହି ଓଁକାରର ଅପର ନାମ ପ୍ରଣବ ବା ତାରକ-ବ୍ରହ୍ମ ।

କବି ଉପେନ୍ଦ୍ର ଭଞ୍ଜ 'ତାରକ' ମନ୍ତ୍ର ପ୍ରସାଦରୁ ଦୁର୍ଲ୍ଲଭ କବିତ୍ୱ ଶକ୍ତିର ଅଧିକାରୀ ହୋଇପାରିଲେ ବୋଲି ନିଜେ ନାନା ସ୍ଥାନରେ ସ୍ୱୀକାର

---

୧୭) ପୁଣ୍ୟବନ୍ତଃ ପ୍ରମିଣ୍ୱନ୍ତି ଯୋଗିବଦ୍ ରସ ସନ୍ତତମ୍ ।

୧୮) 'ରସୋ ବୈ ସଃ, ରସଂ ହ୍ୟେବାୟଂ ଲବ୍‌ଧ୍ୱାନନ୍ଦୀ ଭବତି ଏଷ ହ୍ୟେବା ନନ୍ଦୟାତି'—ଇତ୍ୟାଦି, ତୈତ୍ତିରୀୟ ଉପନିଷଦ ।

୧୯) "ଏଷାଂ ଭୂତାନାଂ ପୃଥିବୀରସଃ । ପୃଥିବ୍ୟାଆପୋରସଃ । ଅପାମ୍ ଓଷଧୟୋ ରସଃ । ଓଷଧୀନାଂ ପୁରୁଷୋରସଃ ପୁରୁଷସ୍ୟ ବାଗ୍‌ରସଃ । ବାଚଃ ଋକ୍‌ରସଃ । ଋଚଃ ସାମରସଃ । ସାମ୍ନଃ ଉଦ୍‌ଗୀଥୋ ରସଃ । ସ ଏଷ ରସାନାଂ ରସ – ତମଃ । ପରମଃ ପରାର୍ଦ୍ଧ୍ୟୋ ଅଷ୍ଟମଃ ଯ ଉଦ୍‌ଗୀଥଃ" । – ଛାନ୍ଦୋଗ୍ୟ ଉପନିଷଦ ।

କହିଯାଇଛନ୍ତି । (୨୦) ଭକ୍ତଙ୍କର ଏହା ଏକ ଅବୈଜ୍ଞାନିକ ବିଶ୍ୱାସ ଉପରେ ଆଧାରିତ ବୋଲି କେହି କେହି ମନେ କରୁଥାନ୍ତି । ତାରକ ମନ୍ତ୍ର ପ୍ରସାଦରୁ ତାଙ୍କ କଣ୍ଠରୁ ପ୍ରକଟିତ ହୋଉଥିବା କଥାଟି ଭକ୍ତଙ୍କର ମୌଳିକ କଣ୍ଠ ପ୍ରତିଭାକୁ ମଳିନ କରିଦେଉଛି ବୋଲି ମତ ପ୍ରକାଶ କରିଥାନ୍ତି । ପ୍ରକୃତରେ କଣ୍ଠ ଆପଣାର ସୃଜନାତ୍ମକ କବିତା ଭଜନକୁ ଧ୍ୟେୟ-କୃପାର ପରିଣତି ବୋଲି ମନେ କରୁଥିଲେ । ସେ ତାରକ-ବ୍ରହ୍ମଙ୍କୁ ହିଁ ଉପାସନା କରି ଶବ୍ଦ-ବ୍ରହ୍ମର ସାକ୍ଷାତ୍କାର ଲାଭ କରିଥିଲେ । ତେଣୁ 'ତାରକ-ମନ୍ତ୍ର' ଉଚ୍ଚସ୍ୱରଟି ଏଠାରେ ଭକ୍ତଙ୍କ କାବ୍ୟ କବିତାର ପ୍ରଶସ୍ତି ଶେଷ-ବ୍ରହ୍ମ ଉପାସନାର ସ୍ୱରୂପକୁ ହିଁ ପ୍ରତିଫଳିତ କରିଅଛି ଏବଂ ଏହା ତାଙ୍କ କୃତିତ୍ୱର ବାଧକ ନ ହୋଇ ସାଧକ ହୋଇଅଛି । ଭକ୍ତ ଅନ୍ୟତ୍ର ମଧ୍ୟ ଏ ବିଷୟ ସ୍ୱୀକାର କରିଛନ୍ତି —

କଳାଇ ଚିତ୍ତ ଅନବରତ

ଧ୍ୟେୟ ଗ୍ରହଣ ତାରକ-ମନ୍ତ୍ର

ସୀତା ଶ୍ରୀରାମ ଚରିତ ଗୀତ

କୃତେ ଲଳସ ଯେ । (ବୈ:ବ:—୧/୩)

ଅଧ୍ୟାତ୍ମ — ତରଣୀ କୂଳର ସାର ଆଶ୍ରୟରୁ ନିରନ୍ତର

କହେ ଉପଇନ୍ଦ୍ର, ଭଞ୍ଜ ।

ମୁଁ ଲଭୁଛି ଶବଦ-ସାଗର ପାର

(କୋ:ବ୍ର:ସୂ:—୩ୟ ଛାନ୍ଦ)

---

୨୦) ତାରକ ମନ୍ତ୍ର ପରସାଦେ
ମୋହର କବି ପଣ ଉଦେ । (ଲା·ବ.)

ପୁନଶ୍ଚ—ଭଣେ ଉପେନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ
ଜାତ କଲେ କ୍ଷୀରାର୍ଣ୍ଣବୁ ସୁଧା ମୋର ଗିରାର୍ଣ୍ଣବୁ ରସଗୀତ ।
ସେ ବିବୁଧ ରଞ୍ଜିତ ଏ ବୁଧ ରଞ୍ଜିତ
ଦୈତ୍ୟା ଖଳରେ ଅଧରଷିତ
ଯେ ପ୍ରାପିତ ହେବ ରତ୍ନ ମତ ଯେ ।
(କୋ:ବ୍ର:ସୁ—୧୬:ଶ ଛାନ୍ଦ)

ଆପଣାର ଅସାଧାରଣ କବିତ୍ୱ ଶକ୍ତି ସମ୍ପର୍କରେ ଏକ ପରିଚୟାତ୍ମକ ବିବରଣୀ ଦେଇ କବି ଅନ୍ୟତ୍ର ମଧ୍ୟ କହିଛନ୍ତି—

‘‘ଭଣେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବି ପୁଞ୍ଜ
ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚର ।’’ (କୋ:ବ୍ର:ସୁ:୧୮ଶ ଛାନ୍ଦ)

କବି ଯେ ଦୁର୍ଲ୍ଲଭ କବିତ୍ୱ ଶକ୍ତିର ଅଧିକାରୀ ହୋଇପାରିଥିଲେ, ତାହାର କାରଣ ସେ ନିଜେ ଉଲ୍ଲେଖ କରିଥିବା ସ୍ଥଳେ, ସେହି ଉକ୍ତିର ଅର୍ଥାନ୍ତର କରିବା ତତ୍ତ୍ୱ ଚର୍ବଣ ଛଡ଼ା ଅନ୍ୟ କିଛି ନୁହେଁ । ‘ନୈଷଧ’କାର ଶ୍ରୀହର୍ଷ ‘‘ଚିନ୍ତାମଣି ମନ୍ତ୍ର ଚିନ୍ତନ ଫଳେ’ ଦୁର୍ଲ୍ଲଭ କବିତ୍ୱ ଲାଭ କରିଥିବା ଘୋଷଣା କରିଛନ୍ତି । ଉପେନ୍ଦ୍ର ଭଞ୍ଜ ତାଙ୍କ ମନ୍ତ୍ର ପ୍ରସାଦରୁ କବିତ୍ୱ ଶକ୍ତି ଲାଭ କଲାପରି ପରବର୍ତ୍ତୀ କବି ‘ଯଦୁମଣି ହୟଗ୍ରୀବ ମଂତ୍ର’ ସାଧନରେ ସିଦ୍ଧିଲାଭ କଲା ପରେ ନିଜର କବିତ୍ୱ ସହଜଲଭ୍ୟ ହୋଇଥିବାର ସ୍ପଷ୍ଟ ସ୍ୱୀକାର କରିଛନ୍ତି—

‘‘ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଥୋଡ଼ା ନୁହେ କେଡ଼ା କରନ୍ତ ଭୂପେ
ଯୋଡ଼ା ହେବା ମୋ ପ୍ରୋତା କବିତାକୁ
କହ କହ ରସ ଦାମ କର୍ଣ୍ଣିକୁ
ଝଲେ ଭଲ ଟଣ୍ଡେ ଖଣ୍ଡ ରୂପ
ନବ ଦୁର୍ବାଦଳ ଶ୍ୟାମଳ କୃପାରୁ
ମୋ ନାମ ‘ଉତ୍କଳ ଘଣ୍ଟ’ ଯେ । (୨୧)

୨୧) କବି ଯଦୁମଣି—ପଂଡ଼ିତ ନରସିଂହ ମହାପାତ୍ର ୧୯୬୮ ପୃ:୩ ।

ପ୍ରାଚୀନ ଯୁଗରେ କବି-ପ୍ରତିଭା ଈଶ୍ୱର ଦତ୍ତ ବସ୍ତୁ ରୂପେ ଗୃହୀତ ହେଉଥିଲା । ସବୁ ବଣରେ ଚନ୍ଦନ ଗଛ ନ ଥାଏ, ସବୁ ସାଗର ମଧ୍ୟରେ ମଣି ନ ଥାଏ କିମ୍ବା ସବୁ ମୃଗର ନାଭିରେ କସ୍ତୁରୀ ନ ଥାଏ । ଜନସାଧାରଣଙ୍କ ମଧ୍ୟରେ ସକଳ ବ୍ୟକ୍ତି ଏହି ଶକ୍ତିର ଅଧିକାରୀ ନୁହନ୍ତି । ଯାହାଙ୍କ ଉପରେ ବିଧାତାଙ୍କର ଅଜସ୍ର ଆଶୀର୍ବାଦ ବର୍ଷିପଡ଼େ, ସେ କେବଳ ଏହି ଦୁର୍ଲ୍ଲଭ ଶକ୍ତିର ଅଧିକାରୀ ହୋଇଥାନ୍ତି । ସେଥିଲାଗି କୁହାଯାଇଛି

ନରତ୍ୱଂ ଦୁର୍ଲ୍ଲଭଂ ଲୋକେ
ବିଦ୍ୟା ତତ୍ର ସୁଦୁର୍ଲ୍ଲଭା
କବିତ୍ୱଂ ଦୁର୍ଲ୍ଲଭଂ ତତ୍ର
ଶକ୍ତି ସ୍ତତ୍ର ସୁଦୁର୍ଲ୍ଲଭା ।

ଏହିପରି ମନୁଷ୍ୟ ଜୀବନ ପାଇବା ଦୁର୍ଲ୍ଲଭ; ଦ୍ୱିତୀୟରେ ଏଥିରେ ବିଦ୍ୟାଲାଭ କରିବା ଦୁର୍ଲ୍ଲଭ; କବିତା ରଚନା କରିବା ଏହାଠାରୁ ଆହୁରି ଦୁର୍ଲ୍ଲଭ; ସେଥିରେ ପୁଣି ଶକ୍ତିଶାଳୀ ହେବା ସଚରାଚର ଅତ୍ୟନ୍ତ ଦୁର୍ଲ୍ଲଭ । କବି ଉପେନ୍ଦ୍ର ଭଞ୍ଜ ଏହିପରି ଏକ ଦୁର୍ଲ୍ଲଭ କବିତ୍ୱ ଶକ୍ତିର ଅଧିକାରୀ ଥିଲେ । ତାଙ୍କ କବି ପ୍ରତିଭା ଏକାନ୍ତ ଭାବରେ ଥିଲା ସ୍ୱୟଂପ୍ରସୂତ । ଏହା ନିଶ୍ଚିତ ଭାବରେ ମଧ୍ୟଯୁଗୀୟ କାବ୍ୟ-ବିଶ୍ୱାସର ସମଗୋଷ୍ଠୀୟ । ଏଥିରେ ଶକ୍ତିର ମିଥ୍ୟା ଆରୋପ ଯେଉଁମାନେ କରନ୍ତି, ସେମାନେ ମଧ୍ୟଯୁଗୀୟ କାବ୍ୟ ବିଶ୍ୱାସରେ ଆପଣାର ଅଜ୍ଞତାକୁ ହିଁ ସୂଚିତ କରିଥାନ୍ତି । ଉପେନ୍ଦ୍ର ଭଞ୍ଜ ଯେଉଁ ଶିଳ୍ପ ବିଶ୍ୱାସ-ପରମ୍ପରାର ଦାୟାଦ, ସେହି ବିଶ୍ୱାସର ଭିତ୍ତି ଏ ଦେଶରେ ସୁପ୍ରାଚୀନ କାଳରୁ ଚଳି ଆସୁଥିଲା । ସେହିପରି ଶୂଦ୍ର ସିଦ୍ଧେଶ୍ୱର ପରିଡ଼ାଙ୍କ ହାତରେ ଶାରଳା ଚଣ୍ଡୀ ଲେଖନୀ ତାଳପତ୍ର ଧରାଇ ଦେଇଥିଲେ କାବ୍ୟ ରଚନା କରିବା ଲାଗି । ପରମ୍ପରାରେ ମହାକବି କାଳିଦାସଙ୍କ କଣ୍ଠରେ ସ୍ୱୟଂ ବାଗ୍‌ଦେବୀ ବାସ କରିବା ଏବଂ ତାହାର ଫଳରେ କବିଙ୍କ କବିତ୍ୱ ଶକ୍ତି ଲାଭ କରିବା କିମ୍ବଦନ୍ତୀ ହୋଇ ପାରେ; କିନ୍ତୁ ଏହା ହିଁ ଏ ଦେଶରେ ପାରମ୍ପରିକ ବିଶ୍ୱାସ ରୂପେ ପ୍ରଚଳିତ ।

କବି ଉପେନ୍ଦ୍ର ଭଞ୍ଜ ଯେ ତାରକ ବ୍ରହ୍ମର ଉପାସନା କରିଛନ୍ତି, ତାହା ପରିଣାମରେ କବିଙ୍କ ଶବ୍ଦ-ବ୍ରହ୍ମର ସାକ୍ଷାତକାର ଲାଭ କରିବାରେ ସହାୟକ ହୋଇଅଛି । କବି ଯେ ଶବ୍ଦ-ବ୍ରହ୍ମର ଜଣେ ଏକନିଷ୍ଠ ଉପାସକ ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ । ଶବ୍ଦ ପରେ ଶବ୍ଦ—ଅସଂଖ୍ୟ ଶବ୍ଦ—କୁସୁମର ମାଳା ଗୁନ୍ଥି କବି ଏ ଜାତିର ସନାତନୀ ବାଣୀ ବାଗ୍‌ଦେବୀଙ୍କ ଗଳାରେ ପିନ୍ଧାଇ ଦେବାକୁ ଯେ ସମର୍ଥ ହୋଇଛନ୍ତି, ଏହା ମୂଳରେ ରହିଛି କବିଙ୍କର ଶବ୍ଦ-ବ୍ରହ୍ମ ସାକ୍ଷାତ୍କାରର କାରଣ, ଯାହା କବିଙ୍କ ଭାଷାରେ 'ଶବଦ-ସାଗର ପାରି' ହେବା ସମ୍ଭବ ଅନୁଭୂତ ହୋଇପାରେ । ଏହି ଦୁର୍ଲଭ ଶବ୍ଦ ବ୍ରହ୍ମର ସାକ୍ଷାତକାର ଲାଭ କରି ନ ଥିଲେ କବି ଭାରତୀୟ ସାହିତ୍ୟ କ୍ଷେତ୍ରରେ ଆପଣାର ଏହିଭଳି ଦୁର୍ଲଭ କବିତ୍ୱ କୀର୍ତ୍ତିର ପରିଚୟ ଦେବାକୁ ସମର୍ଥ ହୋଇ ନ ଥାନ୍ତେ । କବିଙ୍କର କାବ୍ୟାବଳୀ ଯଥାର୍ଥରେ ଶବ୍ଦାର୍ଥ-ମିଳନ-ଯୋଗର ଏକ ମହା ପ୍ରବାହ ଯାହାର ମୂଳରେ ତାରକ-ବ୍ରହ୍ମର ଉପାସନା ଜନିତ ଶବ୍ଦବ୍ରହ୍ମ ସାକ୍ଷାତକାରର କାରଣ ନିହିତ ରହିଅଛି । ଅତଏବ ଉପେନ୍ଦ୍ର ଭଞ୍ଜଙ୍କ କବିତା ଶବ୍ଦାର୍ଥ-ମିଳନ ଯୋଗ ପ୍ରସୂତ ଏବଂ ଏହାର କାରଣ ଶବ୍ଦ-ବ୍ରହ୍ମ ବା ତାରକ-ବ୍ରହ୍ମର ଉପାସନା ।

— o —

# ଉପେନ୍ଦ୍ର ଭଞ୍ଜ ଓ ଗଙ୍ଗାଧର ମେହେରଙ୍କ କାବ୍ୟ-ନାୟିକା ସୀତା ଓ ଚିତ୍ରକଳ୍ପ --ଏକ ତୁଳନାତ୍ମକ ଅଧ୍ୟୟନ

ଡକ୍ଟର ବାଳକୃଷ୍ଣ ଶତପଥୀ

ଉପକ୍ରମ—

''ବୈଦେହୀଶ ବିଳାସ'ର ମଙ୍ଗଳାଚରଣରେ କବି ଉପେନ୍ଦ୍ର ଭଞ୍ଜ ସ୍ପଷ୍ଟତଃ ଉଲ୍ଲେଖ କରିଛନ୍ତି ଯେ—

'ଦଳାଇ ଶତ୍ରୁ ଅନବରତ ଭାଗ୍ୟେ ଗ୍ରହଣ ତାରକ ମନ୍ତ୍ର
ସୀତା ଶ୍ରୀରାମ ଚରିତ ଗୀତ କୃତେ ଲାଳସ ଯେ''

—(୧ମ ଛାନ୍ଦ/୩ୟ ପଦ)

'ବୈଦେହୀଶ ବିଳାସ' କାବ୍ୟର ଉପଜୀବ୍ୟ ବିଷୟ ସୀତା-ରାମ ଚରିତ ଏବଂ ସେହି କାବ୍ୟର ମୁଖ୍ୟ ନାୟିକା—ସୀତା । କିନ୍ତୁ, ସୀତା-ରାମ ଚରିତ ଉକ୍ତ କାବ୍ୟରେ ସମ୍ପୂର୍ଣ୍ଣ ହୋଇ ପାରିନାହିଁ । କାବ୍ୟ ଶେଷରେ କବି ପୁଣି ବ୍ୟକ୍ତ କରିଛନ୍ତି—

''ବୈଦେହୀଶ ବିଳାସ ଏ ଗୀତ ମନୋରମ
ବାନ ଛାନ୍ଦେ ଶେଷ ଆଦ୍ୟ ବ କାର ନିୟମ
ବାଲ୍ମୀକି ସଦନେ ଯାଇ ଜାନକୀ ରହିବା
ବଧ ଲବଣର ଲବ କୁଶ ଜନ୍ମ ହେବା
ହରିବା ଯାଗ ରାମ ସୁତ ଗୀତ ଗାନ
ବୈଦେହୀ ଆଣିବା ପୁଣି ପାତାଳେ ଗମନ

କାବ୍ୟର ଅଙ୍ଗୀରସ ଶୃଙ୍ଗାର ଏବଂ ତାହାର ସହାୟକ ରସ ଭାବରେ କରୁଣ ରସର ଅଭିବ୍ୟଂଜନା ଲକ୍ଷ୍ୟଣୀୟ । ଏ ଦୃଷ୍ଟିରୁ, 'ଛାନ୍ଦଗୀତ' ମଧ୍ୟରେ 'ବର୍ଣ୍ଣନ ରସ' ଆଶଙ୍କାରେ ସୀତା-ରାମଙ୍କ ଉତ୍ତର ଜୀବନ 'ବୈଦେହୀଶ ବିଳାସ' ମଧ୍ୟରେ ଆଦୌ ଗୃହୀତ ହୋଇନାହିଁ । ଉପେନ୍ଦ୍ର ଭଞ୍ଜଙ୍କ ଅଭିପ୍ରେତ ଗ୍ରାହକ ହେଉଛନ୍ତି 'ଚୋବଦ' 'ଅବୁଧ' ଅତଏବ କବି ଉପେନ୍ଦ୍ରଙ୍କ ସଂଯମଶୀଳ, ସୁକୁମାର କବି ଅନ୍ତରକୁ ଶାସ୍ତ୍ରୀୟ ସଚେତନା ସବୁ ସମୟରେ ଆଚ୍ଛନ୍ନ କରି ରଖିଥିବା ତାହାଙ୍କ କାବ୍ୟାବଳୀ ମଧ୍ୟରେ ସ୍ପଷ୍ଟତଃ ଲକ୍ଷ୍ୟ କରାଯାଇଅଛି । ପୁନଶ୍ଚ, ସଂସ୍କୃତଜ୍ଞ ପଣ୍ଡିତ ମଣ୍ଡଳୀ ନିକଟରେ ଓଡ଼ିଆ ଜାତି ଓ ଭାଷାର ମହତ୍ତ୍ୱ ପ୍ରତିଷ୍ଠା ଅଭିପ୍ରାୟରେ ଉପେନ୍ଦ୍ର ଭଞ୍ଜଙ୍କ ସୁକୁମାର କବିତ୍ୱ ବହୁ ସ୍ଥଳରେ ଶାବ୍ଦିକତା, ଆଳଂକାରିକତା ତଥା କାବ୍ୟ-କୌଶଳର ସଚେତନତା ଦ୍ୱାରା ଶ୍ୱାସରୁଦ୍ଧ ହୋଇ ପଡ଼ିଥିବା ଭଞ୍ଜଙ୍କ ଯେ କେହି ଅନୁରାଗୀ ପାଠକ ମଧ୍ୟ ସ୍ୱୀକାର କରିଥାନ୍ତି । ରାମ ତାରକ ମନ୍ତ୍ରସିଦ୍ଧ ମନସ୍ୱୀ ଉପେନ୍ଦ୍ରଙ୍କ କବି ଅନ୍ତର ରାମଚରିତ ଅବଲମ୍ବନ କରି, କାବ୍ୟ ରଚନା ନିମିତ୍ତ ଉତ୍ସାହିତ ହେବା ସ୍ୱାଭାବିକ । ସୀତାରାମ ଚରିତ୍ରର ମହତ୍ତ୍ୱ କରୁଣ ଓ ଶାନ୍ତରସ ମଧ୍ୟରେ ହିଁ ଯଥାର୍ଥ ଅଭିବ୍ୟଂଜନା ଲାଭ କରିଥାଏ । କିନ୍ତୁ ଉପେନ୍ଦ୍ର ଭଞ୍ଜଙ୍କ ସୃଜନ ଚେତନା ଏଥିପ୍ରତି ଯେ ଆଦୌ ସତର୍କ ନୁହେଁ ତାହା କୁହାଯାଇ ନ ପାରେ । କାରଣ 'ବୈଦେହୀଶ ବିଳାସ' କାବ୍ୟର ବହୁ ଅଂଶରେ ଶାନ୍ତ ଓ କରୁଣ ଭାବରେ ସଶକ୍ତ ଅଭିବ୍ୟକ୍ତ ଲକ୍ଷ୍ୟ କରାଯାଇଅଛି । ଏହା ସତ୍ତ୍ୱେ, ଯୁଗୀୟ କାବ୍ୟ-ଚେତନା ତାହାଙ୍କର ସ୍ରଷ୍ଟା-ପ୍ରାଣକୁ ଯେଉଁ କାବ୍ୟାଦର୍ଶ ଦ୍ୱାରା ଅନୁପ୍ରେରିତ କରିଛି, ତଦନୁସାରେ ସେ 'ବୈଦେହୀଶ ବିଳାସ'ର ପରିକଳ୍ପନା କରିଯାଇଛନ୍ତି । ଏସବୁ ଦୃଷ୍ଟିରୁ, ଭବଭୂତିଙ୍କ କରୁଣ ରସ ପୂର୍ଣ୍ଣ 'ଉତ୍ତର ରାମ ଚରିତ' ନାଟକ ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟି ଚେତନାକୁ ନିୟନ୍ତ୍ରିତ କରିନାହିଁ ।

ପକ୍ଷାନ୍ତରେ, ଅଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରମୁଖ କବି ଗଙ୍ଗାଧର ମେହେର ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟାଦର୍ଶର ସମନ୍ୱିତ ପୃଷ୍ଠଭୂମି ଉପରେ ଯେଉଁ ସବୁ କାବ୍ୟ ରଚନା କରିଯାଇଛନ୍ତି, ସେ ସବୁର ଉପାଦାନ ମହାଭାରତୀୟ ବାଙ୍ମୟ ମଧ୍ୟରୁ ଗୃହୀତ ହୋଇଅଛି

ଏବଂ ନୈଷଧରୁ ପ୍ରାଞ୍ଜଳଟି ବୈଦିକ ପରମ୍ପରା ଅନୁସାରେ ଆନନ୍ଦର ବ୍ୟଂଜନା ମଧ୍ୟରେ ପରିଣତି ଲାଭ କରିଛନ୍ତି । ପୁଣି, ସେ ସମସ୍ତ କାବ୍ୟର ଅନ୍ତଃସ୍ରୋତ କରୁଣ ରସରେ ଓତଃପ୍ରୋତ ହୋଇଅଛି । ଅଭିବ୍ୟକ୍ତି ଦୃଷ୍ଟିରୁ ମଧ୍ୟ ଓଡ଼ିଆ ସାହିତ୍ୟର ରୀତିଯୁଗ ଓ ଆଧୁନିକ ଯୁଗର କାବ୍ୟାଦର୍ଶ ମଧ୍ୟରେ ଯେଉଁ ଭିନ୍ନତା ସ୍ପଷ୍ଟ ତାହା 'ବୈଦେହୀଶ ବିଳାସ' ଓ 'ତପସ୍ୱିନୀ' କାବ୍ୟ ମଧ୍ୟରେ ଲକ୍ଷ୍ୟଣୀୟ । ରୀତି ଯୁଗର କାବ୍ୟାବଳୀ ମୁଖ୍ୟତଃ ଶାବ୍ଦିକ ଶ୍ଳେଷବାଜି ତଥା ଅଳଂକରଣ ସମାରୋହ ମଧ୍ୟରେ ଉଦ୍ଦୀପ୍ତ ହୋଇଥିବାବେଳେ ଆଧୁନିକ ଯୁଗର କାବ୍ୟ ସମୂହ ଅପେକ୍ଷାକୃତ ସରଳ ପଦ ବିନ୍ୟାସ ଏବଂ ଅଧିକ ଭାବ ବ୍ୟଂଜକ ଅଳଂକାର ମଧ୍ୟରେ ବିକଶିତ । ଓଡ଼ିଆ ସାହିତ୍ୟର ଏହି ଉଭୟ ଯୁଗ ମଧ୍ୟରେ କାବ୍ୟାଦର୍ଶ-ଗତ ଆତ୍ମିକ ତଥା ଆଙ୍ଗିକ ଦୃଷ୍ଟିରୁ ଏହା ଦୃଶ୍ୟ ଭିନ୍ନତା ସୀତାରାମ ଚରିତ୍ରକୁ ଅବଲମ୍ବନ କରି ରଚିତ ହୋଇଥିବା 'ବୈଦେହୀଶ ବିଳାସ' ଓ 'ତପସ୍ୱିନୀ' କାବ୍ୟ ମଧ୍ୟରେ ଭାଷା ରୂପ ଓ ଭାବରୂପ ଦୃଷ୍ଟିରୁ ଲକ୍ଷ୍ୟ କରିହେବା ସ୍ୱାଭାବିକ । ଉଭୟ କାବ୍ୟ ମଧ୍ୟରେ ସୀତା ମୁଖ୍ୟନାୟିକା ହେଲେ ମଧ୍ୟ ସେହି ଜୀବନର ପୂର୍ବଭାଗ 'ବୈଦେହୀଶ ବିଳାସ' ମଧ୍ୟରେ ଏବଂ ଉତ୍ତର ଜୀବନ 'ତପସ୍ୱିନୀ' ମଧ୍ୟରେ ରୂପାୟିତ ହୋଇଅଛି । 'ବୈଦେହୀଶ ବିଳାସ'ର ଅଙ୍ଗୀରସ ଶୃଙ୍ଗାର ହେବା ସ୍ଥଳେ 'ତପସ୍ୱିନୀ'ର ପ୍ରମୁଖ ରସ ହେଉଛି କରୁଣ । ଉପେନ୍ଦ୍ର ଭଞ୍ଜଙ୍କ ସୀତା ଜନକନନ୍ଦିନୀ, ରାଜବଧୂ ତଥା ବନବିହାରିଣୀ ହେବା ବେଳେ ଗଙ୍ଗାଧରଙ୍କ ସୀତା ହୋଇଛନ୍ତି 'ତପସ୍ୱିନୀ' । ତପସ୍ୱିନୀ କାବ୍ୟର ମଙ୍ଗଳାଚରଣରେ ଗଙ୍ଗାଧରଙ୍କ ସ୍ରଷ୍ଟା-ଦୃଷ୍ଟି ସ୍ପଷ୍ଟତଃ ବର୍ଣ୍ଣାଇଛନ୍ତି —

"ବାଲ୍ମୀକି ଆଶ୍ରମକୁ ଧାଇଁଅଛି ମନ
କରିବାକୁ ନିର୍ବାସିତା ସୀତାଙ୍କୁ ଦର୍ଶନ
କେମନ୍ତେ ସେ କଲେ ଜୀର୍ଣ୍ଣ ହୃଦୟ ସୀବନ ?
କାହା ସଙ୍ଗେ କେମନ୍ତେ ବା ଯାପିଲେ ଜୀବନ ?
କୃପାକରି କୃପାମୟି, କ୍ଷେମ ଦାନ କର
ପବିତ୍ର ହେଉ ମୋ ମନ ଦେଖି, ଲେଖି କର ।"

(ପ୍ରଥମସର୍ଗ)

‘ତପସ୍ୱିନୀ’ କାବ୍ୟର ପରିସମାପ୍ତିରେ ମଧ୍ୟ ସୀତାଙ୍କ ଜୀବନର ପରିଣତି ପ୍ରଦର୍ଶିତ ହୋଇନାହିଁ । ଏହା ସତ୍ତ୍ୱେ, ‘ବୈଦେହୀଶ ବିଳାସ’ର ସୀତା ଚରିତ୍ରର ବର୍ଦ୍ଧିତ ରୂପ ‘ତପସ୍ୱିନୀ’ର ସୀତାଙ୍କ ଜୀବନରେ ଲକ୍ଷ କରିହେବା ସ୍ୱାଭାବିକ । ଉଭୟ କାବ୍ୟ ମଧ୍ୟରେ ‘ସୀତା’ ଚରିତ୍ରର ପରିକଳ୍ପନାଗତ ଯେ ଭିନ୍ନତା ଉଭୟଙ୍କ ମଧ୍ୟରେ କିପରି ପ୍ରଦର୍ଶିତ ହୋଇଅଛି, ତାହାର ଆଲୋଚନା ଉକ୍ତ ପ୍ରବନ୍ଧରେ କରାଯାଇଅଛି । ଉଭୟଙ୍କ ଏହି ଭିନ୍ନତାର ସ୍ୱରୂପ ନିଦର୍ଶନ ପାଇଁ କେତେକ ସୂକ୍ଷ୍ମବାଚକ ପରିକଳ୍ପକୁ ହିଁ ଆଧାର ରୂପେ ଗ୍ରହଣ କରାଯାଇଅଛି ।

ଅଧ୍ୟୟନ—

‘ସୀତା’ ପୌରାଣିକ ନାୟିକା ହୋଇଥିବା ଦୃଷ୍ଟିରୁ କାବ୍ୟ ମଧ୍ୟରେ ସୀତା ଚରିତ୍ରର ପରିକଳ୍ପନାରେ କବି ତାଦୃଶ କାଳ୍ପନିକତାର ସ୍ୱାଧୀନତା ଲାଭ କରିବା ସମ୍ଭବ ନୁହେଁ । କାବ୍ୟ ମଧ୍ୟରେ କାବ୍ୟ-ନାୟିକାର ପୂର୍ବଜନ୍ମ ବୃତ୍ତାନ୍ତ ଉପସ୍ଥାପନ କରିବା ରୀତିଯୁଗୀୟ କବି ଉପେନ୍ଦ୍ର ଭଞ୍ଜଙ୍କ ପ୍ରାୟଶଃ ଏକ ଅନୁସୃତ ଆଦର୍ଶ । ପୂର୍ବଜନ୍ମ ବୃତ୍ତାନ୍ତ ପରିକଳ୍ପନା କରି କାବ୍ୟ-ନାୟିକାକୁ ଅଧିକ ପ୍ରତିଷ୍ଠିତ ଏବଂ ତଦନୁସାରେ କାବ୍ୟକୁ ଅଧିକ ରସପୁଷ୍ଟ କରିବା କବିର ଅଭିପ୍ରାୟ । ଏହି ସମୟରେ ଉପେନ୍ଦ୍ର ଭଞ୍ଜ ଲାବଣ୍ୟବଷ୍ଣ କାଳ୍ପନିକ କାବ୍ୟନାୟିକାର ମଧ୍ୟ ପୂର୍ବଜନ୍ମ ବୃତ୍ତାନ୍ତ ପ୍ରଦାନ କରିଛନ୍ତି । ରାଜର୍ଷି ଜନକଙ୍କ ଦ୍ୱାରା ପ୍ରତିପାଳିତା ସୀତା ପରବର୍ତ୍ତୀ ଅବସ୍ଥାରେ ରାମଚନ୍ଦ୍ରଙ୍କ ପତ୍ନୀ । କିନ୍ତୁ, ପୌରାଣିକତାର ଅବଲମ୍ବନରେ ‘ବୈଦେହୀଶ ବିଳାସ’ କାବ୍ୟରେ ସୀତାଙ୍କ ପୂର୍ବଜନ୍ମାବସ୍ଥା ହେଉଛନ୍ତି— ସେ ବିଷ୍ଣୁଙ୍କ ପତ୍ନୀ, ଲକ୍ଷ୍ମୀ । ଏବଂ ବିଷ୍ଣୁ ମଧ୍ୟ ରାମଚନ୍ଦ୍ର ଅବତାର ଗ୍ରହଣ କରି ତ୍ରେତୟା ଯୁଗରେ ଦଶରଥଙ୍କ ପୁତ୍ର ରୂପରେ ଜନ୍ମଗ୍ରହଣ କରନ୍ତି । ଏହି ସମୟରେ ମଧ୍ୟ କୁହାଯାଇପାରେ, ରାବଣ ଓ କୁମ୍ଭକର୍ଣ୍ଣ ପୂର୍ବ ଜନ୍ମରେ ବିଷ୍ଣୁଙ୍କ ଦ୍ୱାରପାଳ ରୂପରେ କାର୍ଯ୍ୟରତ ଥିଲେ ଏବଂ ଲକ୍ଷ୍ମୀଙ୍କ କର୍ତ୍ତୃକ ଅଭିଶପ୍ତ ହୋଇ ମର୍ତ୍ତ୍ୟଭୂମିରେ ରାକ୍ଷସ ରୂପରେ ଜନ୍ମଗ୍ରହଣ କରିଛନ୍ତି ।

'ବୋଇଲା । ଅଜ୍ଞାନ ନାଶେ ସୁଜ୍ଞାନ ଉଦୟ ଏମନ୍ତ ଯେ
ଜନଟାଏ ଶୁଣ ଏବେ ନିତାନ୍ତ ଚରିତ ଯେ ।
ବୋଇଲା । ବୈକୁଣ୍ଠ ନ ମାନୁ ଆମ୍ଭେ ବୈକୁଣ୍ଠ ପାଳିତ ଯେ
ବୈକୁଣ୍ଠ ଦ୍ୱାଃସ୍ଥ ବିଜୟ ଜୟ ବେନି ଭ୍ରାତ ଯେ
ବୋଇଲା । ବସ୍ତୁ ମନୋରମା ରମା ଏକାନ୍ତରେ ସ୍ଥିତ ଯେ
ବେଦବାଖ୍ୟ ସନକାଦି ଦର୍ଶନ ଅର୍ଥୀ ଯେ''

(ବୈଦେହୀଶ ବିଳାସ ୪୮।୩୪-୩୭)

ଏ ଦୃଷ୍ଟିରୁ ସୀତାଙ୍କ ନିମିତ୍ତ ଲକ୍ଷ୍ମୀଙ୍କ ଉପମା ଉପେନ୍ଦ୍ର ଭଞ୍ଜ 'ବୈଦେହୀଶ ବିଳାସ' କାବ୍ୟର ବହୁ ସ୍ଥଳରେ ପ୍ରଦାନ କରି ଯାଇଛନ୍ତି । (ଏକାଦଶ ଛାନ୍ଦ ୨ୟ ପଦ, ସପ୍ତଚତ୍ୱାରିଂଶ ଛାନ୍ଦ/୨୬ ପଦ, ଏକ ପଞ୍ଚାଶତ୍ ଛାନ୍ଦ/୨ୟ ପଦ ପ୍ରଭୃତି)

ଏ ପ୍ରସଙ୍ଗରେ କୁହାଯାଇପାରେ, କବି ଗଙ୍ଗାଧର ମେହେର ମଧ୍ୟ ସୀତାଙ୍କ ପାଇଁ ଲକ୍ଷ୍ମୀ ଉପମାନ ପ୍ରଦାନ କରିଛନ୍ତି ।

'ଜୟ ଲକ୍ଷ୍ମୀ ରୂପେ କରନ୍ତି ଶାନ୍ତ ପୁରକୁ ଯବେ
ଅଶାନ୍ତ-ସାଗରୁ ଉଠିଥିବ ରାମ ରମଣୀ ନବେ

(ତପସ୍ୱିନୀ — ୨ ସର୍ଗ)

ସୀତଙ୍କ ଉତ୍ତର ଜୀବନ 'ତପସ୍ୱିନୀ' କାବ୍ୟ ମଧ୍ୟରେ ରୂପାୟିତ ହୋଇଥିବା ଦୃଷ୍ଟିରୁ ଲକ୍ଷ୍ମୀ ଉପମାନର ବହୁଳତା 'ତପସ୍ୱିନୀ' କାବ୍ୟରେ ଲକ୍ଷ୍ୟ କରାଯାଇ ନାହିଁ । କାବ୍ୟର ଉପାଦାନ ଦୃଷ୍ଟିରୁ ଏହା ସମୀଚୀନ ବୋଧହୁଏ ।

ପୂର୍ବରୁ କୁହାଯାଇଅଛି, ଭଞ୍ଜଯୁଗୀୟ କାବ୍ୟାଦର୍ଶ ଅନୁଯାୟୀ 'ବୈଦେହୀଶ ବିଳାସ' ଭଳି ପୌରାଣିକ ରାମଚରିତ ସମ୍ବଳିତ କାବ୍ୟ ମଧ୍ୟରେ ହୁଢା ଶୃଙ୍ଗାର ରସ ହିଁ ଅଙ୍ଗୀରସ ଭାବରେ ଗୃହୀତ । ଏ ଦୃଷ୍ଟିରୁ

ସୀତାଙ୍କ ରୂପର ମହତ୍ତ୍ୱ ପ୍ରତିଷ୍ଠା କରିବା ଏବଂ ସେ ରୂପ ମଧ୍ୟରେ ଆକର୍ଷଣୀୟତା ପରିପୂର୍ଣ୍ଣ କରିବା ଲକ୍ଷ୍ୟରେ କବି ଉପେନ୍ଦ୍ର ଭଞ୍ଜ ସୀତାଙ୍କ ଜନ୍ମ ରହସ୍ୟ ସମ୍ପର୍କରେ ଅନ୍ୟ ଏକ କଳ୍ପନା ପ୍ରଦାନ କରିଥିବା ଲକ୍ଷ୍ୟ କରାଯାଏ ।

“ବୃଷ୍ଟାର ପଟେଶର କୁଂଭ ଯେବେ ଦଣ୍ଡେଁ ଅଟେ
ବୃଷ୍ଟି ଶାପୁଁ ମୁକ୍ତ ପାଇଣ ମେନା ମାନିନୀ ରମିଲା
ଯେସି ଶମାନଙ୍କ ଗତାଂଗ ଲଭୁଅଛୁ ରସର
ଶ୍ରୀଭୂତ ଶୋଭ ତ୍ରିଲୋକର ଦଂର ଜନ ଦର୍ଶନ ।

× × ×

ଜନାବନପୁର ଶେଣ୍ଡା ଶୋଭା ଜନକ ବୃଷ୍ଟି
ବଳାଇଲେ ଚିତ୍ତ ମୋ ସୁତା ପୂଣ ସ୍ୱଅନ୍ତା ଏକ୍ଷ
ଜାନାରୁଣୋଧସ୍ଥ କହ୍ନ ଜାଣି ତାହାଙ୍କ ଚିତ୍ତ
ଜୋନାଏ ଏଟଣି ଅଭ୍ରତେ ହୋଏ ସିନା ପ୍ରକଟ ।”

(ବୈ. ବି. ୩ୟ ଛାନ୍ଦ)

ମେନକାର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ରାଜର୍ଷି ଜନକ କାମନା କରିଥିଲେ ଏହି ରୂପସୀଙ୍କୁ ନିଜର କନ୍ୟା ରୂପେ ଲାଭ କରିବା ନିମିତ୍ତ ଏବଂ ମେନକା ଜନକଙ୍କର ଏତାଦୃଶ କାମନାକୁ ହୃଦ୍‌ବୋଧ କରି 'ଅଦ୍ଭୁତ' ଭାବରେ ଏକ ସର୍ବସୁନ୍ଦରୀ କନ୍ୟା ପ୍ରାପ୍ତ ହେବାର ସୂଚନା ପ୍ରଦାନ କରି ଯାଇଅଛି । 'ଲକ୍ଷ୍ମୀ'ଙ୍କ ମହତ୍ତ୍ୱ ସହିତ 'ମେନକା'ର ଅପରୂପ ଶୋଭା ଗ୍ରହଣ କରି 'ବୈଦେହୀଶ ବିଳାସ'ର ନାୟିକା ସୀତା ଜନ୍ମଲାଭ କରିଛନ୍ତି । କେବଳ ସେତିକି ନୁହେଁ, ସୀତାଙ୍କ ନିମିତ୍ତ 'ବୈଦେହୀଶ ବିଳାସ' କାବ୍ୟରେ କନ୍ଦର୍ପ ପତ୍ନୀ ଅସାମାନ୍ୟା ସୁନ୍ଦରୀ 'ରତି'ଙ୍କ ଉପମାନ ପ୍ରଦାନ କରିଥିବା ସଙ୍ଗେ ସଙ୍ଗେ ରୂପ ଦୃଷ୍ଟିରୁ ସୀତାଙ୍କ ପାଇଁ ଅପ୍ସରା 'ରମ୍ଭା'ର ଉପମାନ ମଧ୍ୟ ଗ୍ରହଣ କରାଯାଇଅଛି ।

ଏତଦ୍‌ବ୍ୟତୀତ, ସୀତାଙ୍କ ଆଭ୍ୟନ୍ତରୀଣ ମହତ୍ତ୍ୱ ଓ ଗୁଣଗୌରବ ଦୃଷ୍ଟିରୁ ଉପେନ୍ଦ୍ର ଭଞ୍ଜ ସ୍ଥଳ ବିଶେଷରେ ସୀତାଙ୍କ ସହିତ 'ଦୁର୍ଗା' 'ଗଙ୍ଗା'

'ବେଣ' ଓ 'ବେଣୁମତୀ'ର ଏକାଧିକବାର ତୁଳନା କରିଛନ୍ତି । ଏତାଦୃଶ ଉପମାନ ପ୍ରୟୋଗ କରି ସୀତାଙ୍କ ଶକ୍ତି, ସୌନ୍ଦର୍ଯ୍ୟ ଓ ପବିତ୍ରତାର ପ୍ରତିଷ୍ଠା କରାଯାଇଅଛି । ରାକ୍ଷସ ରାବଣ ସୀତାଙ୍କ ଛଳ ପଞ୍ଚମ ମାସଙ୍କୁ ଅପହରଣ କରି ନେଇଥିବା ବେଳେ ସୀତାଙ୍କ ପବିତ୍ର ବେଦ ତଥା ବେଦମନ୍ତ୍ରଙ୍କ ଉପମାନ ପ୍ରୟୋଗ ଯଥାର୍ଥ ମନେ ହୋଇଛି । 'ବୈଦେହୀଶ ବିଳାସ'ରେ ସୀତାଙ୍କ ଶକ୍ତି ଓ ପବିତ୍ରତାର ପ୍ରତିଷ୍ଠା ଯେପରି କବିଙ୍କ ମୂର୍ତ୍ତି ସ୍ୱରରେ କରାଯାଇଅଛି, 'ରସପ୍ରିମା' କାବ୍ୟରେ ମଧ୍ୟ ଅନୁରୂପ ଲକ୍ଷଣ ଲକ୍ଷ୍ୟଣୀୟ । କାରଣ, ସୀତାଙ୍କ ଉତ୍ତମ ଗୀତାରେ କରି ତାହାଙ୍କ ଶକ୍ତି, ପବିତ୍ରତା ତଥା ମହତ୍ତ୍ୱ ଅଧିକ ଭାବରେ ଅନୁଭୂତ ହେବା ସ୍ୱାଭାବିକ । କେତେବେଳେ ସୀତାଙ୍କ ମହତ୍ତ୍ୱ ପ୍ରତିଷ୍ଠା ଲକ୍ଷ୍ୟରେ ସୀତାଙ୍କ ପାଇଁ ମଧ୍ୟ 'ଭାରତୀ' 'ଜାହ୍ନବୀ' 'ଲକ୍ଷ୍ମୀ' 'ଉମା' ପ୍ରଭୃତି ପୌରାଣିକ ଶବ୍ଦଙ୍କୁ ପ୍ରୟୋଗ କରିଛନ୍ତି ।

କାବ୍ୟରେ ବର୍ଣ୍ଣିତ ବିଷୟ ବା ଚରିତ୍ରକୁ ଅଧିକ ପ୍ରାଞ୍ଜଳ ତଥା ପ୍ରଭାବଶାଳୀ କରିବା ଅଭିପ୍ରାୟରେ କବି କଳ୍ପନା ମୂଳକ ଅଳଂକାରର ପ୍ରୟୋଗ କରିଥାନ୍ତି । କବି ଉପେନ୍ଦ୍ର ଭଞ୍ଜ ନିଜ କାବ୍ୟ ମଧ୍ୟରେ କଳ୍ପନା ମୂଳକ ଅଳଂକାର ବିଶେଷତଃ ଉପମା ପ୍ରୟୋଗ ମଧ୍ୟରେ ନିଜର ପାରଦର୍ଶିତା ପ୍ରଦର୍ଶନ କରିଥିବା ଯୋଗୁଁ 'ଉପମା ଭଞ୍ଜସ୍ୟ' ଓଡ଼ିଆ ସମାଲୋଚନା ସାହିତ୍ୟରେ ଏକ ପ୍ରତିଷ୍ଠିତ ଉକ୍ତି ଭାବରେ ପ୍ରଚଳିତ ହୋଇ ଆସୁଅଛି । କାବ୍ୟୋକ୍ତି ମୁଖ୍ୟତଃ ଦ୍ୱିବିଧ — ତନ୍ମଧ୍ୟରୁ ଗୋଟିଏ ସ୍ୱଭାବୋକ୍ତି ଏବଂ ଅନ୍ୟଟି ଅତିଶୟୋକ୍ତି । ଭଞ୍ଜଙ୍କ କାବ୍ୟାବଳୀ ମଧ୍ୟରେ ସ୍ୱଭାବୋକ୍ତି ତୁଳନାରେ ଅତିଶୟୋକ୍ତିର ପ୍ରୟୋଗ ବହୁମାତ୍ରାରେ ଲକ୍ଷ୍ୟ କରାଯାଇଅଛି । ଭଞ୍ଜଙ୍କ ପ୍ରତ୍ୟେକ କାବ୍ୟରେ ଉକ୍ତ ଅତିଶୟୋକ୍ତି ଅର୍ଥଗୌରବ ମାଧ୍ୟମରେ ପ୍ରତିଷ୍ଠା ଅର୍ଜନ କରିଥିବା ମଧ୍ୟ ଲକ୍ଷ୍ୟ କରାଯାଏ । ନାୟିକାର ରୂପ ବର୍ଣ୍ଣନାଠାରୁ ଆରମ୍ଭ କରି ତାର ଆଭ୍ୟନ୍ତରୀଣ ମହତ୍ତ୍ୱ ପ୍ରତିଷ୍ଠା ନିମିତ୍ତ କବି-ସମ୍ରାଟ ବିବିଧ ଉପମାର ପ୍ରୟୋଗ ମଧ୍ୟରେ ଅର୍ଥଗୌରବ ପ୍ରତିପାଦନ କରିଯାଇଛନ୍ତି । ଏ ଦୃଷ୍ଟିରୁ ରୀତିକାବ୍ୟ ମଧ୍ୟରେ ଉପେନ୍ଦ୍ର ଭଞ୍ଜ 'ଉପମା' ପାଇଁ ଯେପରି ପ୍ରତିଷ୍ଠିତ, 'ଅର୍ଥଗୌରବର' ପ୍ରୟୋଗ କୃତିତ୍ୱ ନିମିତ୍ତ ସେହିପରି ସ୍ୱୀକୃତ ମଧ୍ୟ ।

ଉକ୍ତ ପ୍ରବନ୍ଧରେ ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' କାବ୍ୟର କାବ୍ୟ-ନାୟିକା 'ସୀତା' ଚରିତ୍ରର ବିବର୍ତ୍ତନର ମହତ୍ତ୍ୱ ସହିତ କବି ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ' କାବ୍ୟର 'ସୀତା' ଚରିତ୍ରର ପରିବେଷଣଗତ ଚମତ୍କାରିତାର ଏକ ତୁଳନାତ୍ମକ ଅଧ୍ୟୟନ କରାଯାଇଅଛି । ଏ ଦୃଷ୍ଟିରୁ ପ୍ରଥମ ପର୍ଯ୍ୟାୟରେ, ଉଭୟ କାବ୍ୟ ମଧ୍ୟରେ କାବ୍ୟ ନାୟିକା ସୀତାଙ୍କର ମୁଖ୍ୟ ଭୂମିକା ଏବଂ ସେହି ଚରିତ୍ରର ଏକ ବିବର୍ତ୍ତନ ସୂଚନା ପ୍ରଦାନ କରାଯାଇଅଛି । 'ସୀତା'ଙ୍କ ଜୀବନର ଉକ୍ତ ଦୁଇଟି ପର୍ଯ୍ୟାୟ ପ୍ରୋକ୍ତ ଦୁଇଟି କାବ୍ୟ ମଧ୍ୟରେ ରୂପାୟିତ ହୋଇଅଛି । କାବ୍ୟରେ ରସ ଓ ସୌନ୍ଦର୍ଯ୍ୟର ସୃଷ୍ଟି ଦୃଷ୍ଟିରୁ ଉକ୍ତ ଚରିତ୍ରର ଉପାଦାନଗତ ଏ ଭିନ୍ନତା ବିବର୍ତ୍ତନଗତ ଚମତ୍କାରିତା ମଧ୍ୟରେ କିପରି ସଂଘଟିତ ହୋଇଛି ସଂପ୍ରତି ତାହାର ବିଶ୍ଳେଷଣ କରାଯାଉଅଛି । ଉକ୍ତ ଅଧ୍ୟୟନ ମୁଖ୍ୟତଃ ତୁଳନାତ୍ମକ ହୋଇଥିବା ଦୃଷ୍ଟିରୁ କେତେଗୋଟି ନିର୍ଦ୍ଦିଷ୍ଟ ଉପକଳ୍ପକୁ ଏବଂ ସୀତା ଚରିତ୍ରର କେତେକ ଖାଣ୍ଟି ନିର୍ଦ୍ଦିଷ୍ଟ ଦିଗକୁ ଆଧାର କରି ଉଭୟ କାବ୍ୟର ରସ ଓ ପ୍ରତିପାଦ୍ୟ ଦୃଷ୍ଟିରୁ ତାହା କିପରି ଚମତ୍କାରିତାପୂର୍ଣ୍ଣ ଏବଂ ବିବର୍ତ୍ତନଧର୍ମୀ ତାହାର ଆଲୋଚନା କରାଯାଉଅଛି । ମୋଟ ଉପରେ, 'ବୈଦେହୀଶ ବିଳାସ' ଓ 'ତପସ୍ୱିନୀ' କାବ୍ୟ ମଧ୍ୟରେ କାବ୍ୟନାୟିକା 'ସୀତା' ଚରିତ୍ରର ଯେଉଁ ଉପାଦାନଗତ ବିବର୍ତ୍ତନ ଲକ୍ଷ୍ୟ କରାଯାଏ, ସେ ଦୃଷ୍ଟିରୁ ତାହାର କଳାତ୍ମକ ଉପସ୍ଥାପନାରେ ତାଦୃଶ ବିବର୍ତ୍ତନ କିପରି ସୂକ୍ଷ୍ମ ସୌନ୍ଦର୍ଯ୍ୟ ଚେତନା ଦ୍ୱାରା ଶାଣିତ ହୋଇଛି ତାହାର ବିଚାର ମଧ୍ୟ କରାଯାଇଅଛି ।

'ବୈଦେହୀଶ ବିଳାସ' କାବ୍ୟର ମୁଖ୍ୟନାୟିକା ସୀତା ଅତ୍ୟନ୍ତ ରୂପସୀ ତଥା ସୌନ୍ଦର୍ଯ୍ୟଶାଳିନୀ ହେବା ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାଦର୍ଶ ଦୃଷ୍ଟିରୁ ଯେପରି ସ୍ୱାଭାବିକ, ସୀତା ଚରିତ୍ରର ପୌରାଣିକ ଉପାଦାନ ଦୃଷ୍ଟିରୁ ମଧ୍ୟ ତାହା ସେପରି ଅପରିହାର୍ଯ୍ୟ । ଏ ଦୃଷ୍ଟିରୁ ଉପେନ୍ଦ୍ର ଭଞ୍ଜ ତାହାଙ୍କର ବିବିଧ କାଳ୍ପନିକ କାବ୍ୟ-ନାୟିକାର ଅନିନ୍ଦ୍ୟ ରୂପକୁ କବି ଚାତୁର୍ଯ୍ୟ ମଧ୍ୟରେ ଯେପରି ପ୍ରତିଷ୍ଠା କରିପାରିଛନ୍ତି, 'ସୀତା'ଙ୍କ ସୌନ୍ଦର୍ଯ୍ୟ ପ୍ରତିଷ୍ଠା ପାଇଁ ମଧ୍ୟ ତାଦୃଶ ଚାତୁର୍ଯ୍ୟ ଲକ୍ଷ୍ୟ କରାଯାଇଛି ।

"ବୈଦେହୀ ଯେ ସୁନ୍ଦରୀ ବ୍ରଜେ ଅମୂଲ୍ୟ ଚୂଡ଼ାମଣି
ବର୍ତ୍ତମାନ ଷେ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି"

(ବୈ.ବି. ୮/୧)

ଏହି ବିବାହ ସ୍ୱୟଂ ଅପରୂପା ସୀତାଙ୍କ ରୂପ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ସ୍ଥୂଳତଃ କବି ତ'ରପାରେ ଯେ ଜଗତର ସକଳ ଶ୍ରେଷ୍ଠ ବସ୍ତୁର ଉପାଦାନ ସଂଗ୍ରହ କରି ବିଧାତା ଏହାଙ୍କୁ ସୃଷ୍ଟି କରିଛନ୍ତି । ଏହି କାବ୍ୟ-ସତ୍ୟ ଦୃଷ୍ଟିରୁ ସୌନ୍ଦର୍ଯ୍ୟର ସକଳ ଆଦର୍ଶ ଉପାଦାନ ସମ୍ବଳ ସୀତାଙ୍କ ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ତଥା ନଖଶିଖ ପରିପାଟୀର ପ୍ରତ୍ୟେକ ଅଂଶର ବୈଚିତ୍ର୍ୟପୂର୍ଣ୍ଣ ବର୍ଣ୍ଣନା ଉପମେୟ ଭଙ୍ଗୀ ପ୍ରଦାନ କରିପାରିଛନ୍ତି । ଏତାଦୃଶ ବର୍ଣ୍ଣନାର ଅପୂର୍ବତା ମଧ୍ୟରୁ ଯେଉଁସବୁ ବର୍ଣ୍ଣନା ସୂକ୍ଷ୍ମ ସୌନ୍ଦର୍ଯ୍ୟ-ଚେତନା ଦ୍ୱାରା ମଣ୍ଡିତ ହୋଇଛି ସେଥିମଧ୍ୟରୁ କେତେକୋଟିର ବିଶ୍ଳେଷଣ ଏ କ୍ଷେତ୍ରରେ କରାଯାଇଅଛି । ଏବଂ 'ବୈଦେହୀଶ' କାବ୍ୟର ମଧ୍ୟ ସେହି ପ୍ରସଙ୍ଗରେ ଅନ୍ୱେଷଣ କରାଯାଇଥିବା କେତେକ ଚିତ୍ରର ଅଳଙ୍କାରିକ ତୁଳନାତ୍ମକ ବିଶ୍ଳେଷଣ କରାଯାଇଅଛି ।

ଏଣ ଶରତ ଋତୁଙ୍କରେ ରାଜକନ୍ୟା ସୀତା ଉପସ୍ଥିତା ହୋଇଛନ୍ତି । ପୂର୍ବୋକ୍ତ ସ୍ଥାନର ଯେଉଁ ସୀତାଙ୍କର ସୌନ୍ଦର୍ଯ୍ୟର ସୃଷ୍ଟି ଓ ମହତ୍ତ୍ୱ ଚିତ୍ରିତ ହୋଇଥିଲା, ସଂଶ୍ଳିଷ୍ଟ ପରିସ୍ଥିତିରେ ଉପାଦାନ ଦୃଷ୍ଟିରୁ 'ବୈଦେହୀଶ' କାବ୍ୟରେ ସୀତାଙ୍କର ଆବିର୍ଭାବ ମହତ୍ତ୍ୱକୁ ଉଦ୍ଘାଟନ କରିବା ଯେପରି ସ୍ୱାଭାବିକ, ପୁଣି ତାହାଙ୍କର ଶାଶ୍ୱତ ରୂପ ଓ ସୌନ୍ଦର୍ଯ୍ୟର ମହନୀୟତାକୁ ସୂକ୍ଷ୍ମ ସୌନ୍ଦର୍ଯ୍ୟର ଶାଣିତ ଦୃଷ୍ଟି ଦେଇ ଉପସ୍ଥାପନ କରିବା ମଧ୍ୟ ସେପରି ଆବଶ୍ୟକ । ଏ ଦୃଷ୍ଟିରୁ 'ବୈଦେହୀଶ' କାବ୍ୟରେ ସୀତାଙ୍କ ରୂପ ବର୍ଣ୍ଣନା ପର୍ଯ୍ୟାୟର ପ୍ରତ୍ୟେକ ସ୍ଥଳରେ ଚମତ୍କାରିତା ଲକ୍ଷ୍ୟ କରାଯାଇଅଛି ।

"କେଶ କାନ୍ତି ମାଗି ନେଲା ଷଟ୍‌ପଦ
ରମ୍ଭା ନେଲା ଜାନୁ କାନ୍ତି ସଂପଦ
ମନ୍ଦାରକୁ ଗଲା ଅଧର ରୁଚି
ଆଉ ସକଳଙ୍କୁ ପାର୍ଶ୍ୱ ଯା ରୁଚି
ସର୍ବେ ହେଲେ କାନ୍ତିମୟ
ସ୍ୱର୍ଗ ଲକ୍ଷ୍ମୀ କିବା ମର୍ତ୍ତ୍ୟ ଆସି କଲା
ଉଦ୍ୟାନକୁ ଲୀଳାଳୟ ।

ସନ୍ତ କାନ୍ତ ଥିଲ ଅମୃତ ସମ
ସ୍ପୃଷ୍ଟ ହେଲ ମଧୁ ଅମୃତୋପମ
ମାର୍ଦ୍ଦବ ମାଞ୍ଜିକ ସେ ରୂପେ ଯାଇ
ହେଲେ ପୁଷ୍ପକୁଳ ଅଙ୍ଗରେ ସ୍ଥାୟୀ
ସତୀ ହୋଇ ତପସ୍ୱିନୀ
ସରସ ଜୀବନେ      ନିଷ୍ପ୍ରଭ ଶଙ୍କରେ
ହେଲେ ବନ-ବିଳାସିନୀ (ତପସ୍ୱିନୀ-୫।୦-୭)

ସୀତାଙ୍କ ରୂପଗତ ସୌନ୍ଦର୍ଯ୍ୟ ତଥା ଆଭ୍ୟନ୍ତରୀଣ ମହତ୍ତ୍ୱ ସମ୍ପାଦନ ଲକ୍ଷ୍ୟରେ କେତେକ ଚିତ୍ରକଳ୍ପକୁ ଉଦ୍ଧୃତ କରି (ଉପେନ୍ଦ୍ର ଭଞ୍ଜ ଓ ମେହେର) ପରିବେଷଣ କରିଥିଲେ ମଧ୍ୟ କାବ୍ୟଗତ ଉପାଦାନ, ରସ ତଥା ଆଭିମୁଖ୍ୟ ଦୃଷ୍ଟିରୁ ସେହିସବୁ ଚିତ୍ରକଳ୍ପରେ ଯେଉଁ ସୂକ୍ଷ୍ମ ପାର୍ଥକ୍ୟ ଲକ୍ଷ୍ୟ କରାଯାଇଅଛି, ନିମ୍ନରେ ତନ୍ମଧ୍ୟରୁ କେତେକ ନିର୍ବାଚିତ ଚିତ୍ରକଳ୍ପର ବିଶ୍ଳେଷଣ କରାଯାଉଅଛି ।

ନାରୀ ରୂପ ବର୍ଣ୍ଣନାରେ 'ପଦ୍ମ' କବି ଚେତନାରେ ଏକ ପ୍ରତିଷ୍ଠିତ ଚିତ୍ରକଳ୍ପ । ଏ ଦୃଷ୍ଟିରୁ କାବ୍ୟନାୟିକା 'ସୀତା'ଙ୍କ ନିମିତ୍ତ ଉଭୟ କବି 'ପଦ୍ମ' ଏବଂ ତାହାର ବିବିଧ ଉପାଦାନକୁ ଉପମାନ ରୂପେ ସ୍ୱ ସ୍ୱ କାବ୍ୟରେ ପରିବେଷଣ କରିଛନ୍ତି 'ବୈଦେହୀଶ ବିଳାସ' କାବ୍ୟରେ 'ପଦ୍ମ' ସମ୍ପର୍କିତ କେତେଗୋଟି ଚିତ୍ରକଳ୍ପ ମଧ୍ୟରେ ସୂକ୍ଷ୍ମ ସୌନ୍ଦର୍ଯ୍ୟ ଚେତନା ଲକ୍ଷ୍ୟ କରାଯାଇଅଛି ।

୧) ଜାନକୀ ଲୀଳା କଉତୁକେ ଅନ୍ତଃପୁରସ୍ଥା ମୋହ
ଜାଳ ନ ଶୈବାଳ କମଳ କୋଷ ଉପରେ ଶୋହ (୧୨।୩)

୨) ବୈଦେହୀ ବଦନ ଦେହୀ କମଳ କେଶରେ ନାହିଁ
ସହୀ ଚକ୍ରତରେ ଥିଲେ ମଣ୍ଡି ଅଙ୍ଗାଳୀ (୪।୧୯)

୩) କରକ କରଙ୍ଗୀ ସୀତା କରକ କରିଲ ଚନ୍ଦ୍ରା ଜୀବନ ଯାଉ
ନୋହିଲେ ହେଲେ ଏ କର ।
କମଳତ ନେତ୍ର ଫିଟେ, ମୁଦ୍ରିତ କଞ୍ଜକ ଫୁଟେ ପ୍ରମୋଦଦାୟକ
ପରଭୃତଙ୍କ ସ୍ୱର । (୪।୩୨)

୪) କନକେ ଗଢ଼ା ଉତ୍ପଳ ପବନେ କି ତଳେ
ଅମଳ ଚନ୍ଦ୍ର ଚୁମ୍ବନେ ସେ ସ୍ମିତ ବନ୍ଧିଲେ । (୬/୬୦)

୫) କନକୁନ୍ଦ ଜଳେ ସ୍ଥଳାବ୍ଜ ପରାଗେ ପରିଳେ ଏ ନୂଆ ଛନ୍ଦ
ଅଭ୍ୟାସ ଚରଣ କଳ ସ୍ଥଳେ ପଦ୍ମ ଉଚ୍ଛୁଟି ଯାଉଛୁ ପଦ୍ମ
କମ୍ବୁକଣ୍ଠ ବୋଲନ୍ତି । ବାଲ ଚନ୍ଦ୍ରଙ୍କୁ ଅପାଙ୍ଗ ଚୁମ୍ବ । (୧୬/୫୧)

୬) ଅରଣ୍ୟ ମାନସିକ ପୂଜା । ବୈଦର୍ଭୀ ପାଶେ ଜନକଜା
ଅରୁଣ କହ୍ଲାର ଦାଣ୍ଡେର, ଅକଚ ପଦ୍ମେ ଯେ ପ୍ରକାରେ । (୧୨।୩୬)

ଶୈଶବାବସ୍ଥାରେ ସୀତାଙ୍କ ସୁନ୍ଦର ମୁଖମଣ୍ଡଳ ଉପରେ ପଡ଼ିଥିବା ଚୂର୍ଣ୍ଣ କୁନ୍ତଳର ସୌନ୍ଦର୍ଯ୍ୟକୁ ଶୈବାଳ ବେଷ୍ଟିତ ପଦ୍ମ ରୂପରେ ପ୍ରଥମ ଦୃଷ୍ଟାନ୍ତରେ ବର୍ଣ୍ଣନା କରାଯାଇଅଛି । ଅମଳଦେହା ବୈଦେହୀଙ୍କର ଶରୀର କାନ୍ତିକୁ ଦ୍ୱିତୀୟ ଦୃଷ୍ଟାନ୍ତରେ ପଦ୍ମକେଶର ସହିତ ତୁଳନା କରାଯାଇଅଛି । ତୃତୀୟ ଦୃଷ୍ଟାନ୍ତ ମଧ୍ୟରେ ଏକ ସୂକ୍ଷ୍ମ ସୌନ୍ଦର୍ଯ୍ୟଚେତନା ଯଥାର୍ଥରେ ଅଭିବ୍ୟକ୍ତ ହୋଇଅଛି । ଧ୍ୟାନସ୍ଥା ସୀତାଙ୍କ ମୁଦ୍ରିତ ଚକ୍ଷୁ ରାମଚନ୍ଦ୍ରଙ୍କ ଶିବଧନୁ ଉତ୍ତୋଳନ ଦୃଶ୍ୟରେ ଉନ୍ମୀଳିତ ହୋଇଯିବା ଅବସ୍ଥାକୁ କବି ବକ୍ରୋକ୍ତିରେ ପ୍ରକାଶ କରିଛନ୍ତି — ସତେ ଯେପରି ଏକ ମୁଦ୍ରିତ ପଦ୍ମ ପ୍ରସ୍ଫୁଟିତ ହୋଇଗଲା । ଚତୁର୍ଥ ଦୃଷ୍ଟାନ୍ତଟି ମଧ୍ୟରେ ସୀତାଙ୍କ ମୁଖକୁ ରାମଚନ୍ଦ୍ର ଚୁମ୍ବନ ପ୍ରଦାନ କରିବା ଅବସ୍ଥାକାଳୀନ ଦୃଶ୍ୟର ମନୋଜ୍ଞ ସ୍ୱରୂପରେ ବର୍ଣ୍ଣନା କରାଯାଇଅଛି । ସୀତାଙ୍କ ମୁଖକୁ ପଦ୍ମପୁଷ୍ପର ସାମ୍ୟ କଳ୍ପନା କରି ନୀଳକାନ୍ତ ମଣିଷ୍ଟ ରାମଚନ୍ଦ୍ରଙ୍କ ମୁଖକୁ ନୀଳୋତ୍ପଳ ସହିତ ତୁଳନା କରାଯାଇଅଛି । ରାମଚନ୍ଦ୍ରଙ୍କ ମୁଖ ନଇଁ ଆସିଛି ସୀତାଙ୍କ ମୁଖ ପ୍ରତି ଏକ ଚୁମ୍ବନ ପ୍ରଦାନ କରିବା ଲାଗି ମଧୁର ଆବେଶରେ । ଉକ୍ତ ଅବସ୍ଥାକୁ କବି ଏକ ଚଳମାନ ସୌନ୍ଦର୍ଯ୍ୟର ଚିତ୍ର ପ୍ରଦାନ କରିଛନ୍ତି— ସତେ ଯେପରି ସରସୀରେ ଥିବା ପଦ୍ମ ଉପରେ ପବନ ଘାତରେ ଢଳି ପଡ଼ୁଛି ଏକ ନୀଳକଇଁ । ପରବର୍ତ୍ତୀ ଉଦାହରଣଟିରେ, ସୀତାଙ୍କ ପଦ୍ମପାତରେ ପଦ୍ମ ଫୁଟିଯାଉଥିବା ଅଭିଶପ୍ତୋକ୍ତିକୁ ଅର୍ଥଗୌରବ ମାଧ୍ୟମରେ ପରିବେଷଣ କରାଯାଇଅଛି । ତାହାକୁ ଅଧିକ ଚମତ୍କାର କରିବା

ଲକ୍ଷ୍ୟରେ ସୀତାଙ୍କ ପଦାଙ୍କ ଉପରେ ଭ୍ରମର ଭ୍ରମବଶତଃ ଚୁମ୍ବନ ପ୍ରଦାନ କରିପାରୁଛି ବୋଲି କବି ବର୍ଣ୍ଣନା କରିଛନ୍ତି । ଏଷ୍ଟୁ ଉଦାହରଣଟିରେ ଏକ ଆନୁପାତିକ ଚିତ୍ର ପ୍ରଦାନ କରାଯାଇଅଛି । ଋଷିପତ୍ନୀ ଶୋଭନାଙ୍ଗୀ ଲୋପାମୁଦ୍ରାଙ୍କ ନିକଟରେ ବସିଛନ୍ତି ଜନକଦୁହିତା ବିଦେହତନୟା ସୀତା । ଏ ଚିତ୍ର ନିମିତ୍ତ କବି କଳ୍ପନା କରୁଛନ୍ତି ସତେ ଯେପରି ଗୋଟିଏ ଶ୍ୱେତପଦ୍ମ ନିକଟରେ ଫୁଟିଅଛି ଗୋଟିଏ ବିକଶିତ ରକ୍ତପଦ୍ମ । ମୋଟ ଉପରେ କୁହାଯାଇପାରେ, 'ବୈଦେହୀଶବିଳାସ' କାବ୍ୟ ମଧ୍ୟରେ 'ସୀତା'ଙ୍କ ନିମିତ୍ତ ଯେଉଁ ସବୁ 'ପଦ୍ମ' ଉପମାନ ପ୍ରଯୁକ୍ତ ହୋଇଛି ତାହା ସୂକ୍ଷ୍ମ ସୌନ୍ଦର୍ଯ୍ୟ ଚେତନାରେ ଶାଣିତ ହୋଇ ଅଧିକାଂଶ ସ୍ଥଳରେ ଏକ ଚଳମାନ ସୌନ୍ଦର୍ଯ୍ୟ ସୃଷ୍ଟି କରିପାରିଅଛି ।

ସଂପ୍ରତି ସୀତାଙ୍କ ନିମିତ୍ତ 'ତପସ୍ୱିନୀ' କାବ୍ୟରେ ପ୍ରଯୁକ୍ତ ହୋଇଥିବା 'ପଦ୍ମ' ଉପମାନ ସମ୍ପର୍କରେ ବିଶ୍ଲେଷଣ କରାଯାଉଅଛି ।

୧) ଉଠି ଯେସନ୍ତେ ଜଳଧର ପଶ୍ଚିମ ଆଶାରେ
ଅସ୍ତାଚଳ ପ୍ରାନ୍ତଏ ଅଳସ ଆସାରେ
କଞ୍ଚନ କର-ଶୀକର ସରସୀ ଉରସେ
ଚଡ଼ସିକ୍ତ କରେ କମ୍ବା ପ୍ରଦୋଷ-ସାରସେ" (ପ୍ରଥମ ସର୍ଗ)

୨) ଲଳିତ ଦିଶୁଛି ଲଲାଟ ତା'ର ସିନ୍ଦୂର ବିନ୍ଦୁ
ମୁଖ କମଳକୁ ହୋଇଛି ଯେସନ୍ତେ ପୂର୍ଣ୍ଣିମା ଇନ୍ଦୁ (୨ୟ ସର୍ଗ)

୩) ତର ବିକଶିତ କମଳେ କଣ୍ଟକ ପରାଗେ
ଶତଦଳ-ରୁଚି ରୁଚିର ତେଜେ ସେ ଶୋଭା ପାଏ । (୨ୟ ସର୍ଗ)

୪) ସେ ସ୍ୱାମୀ ଦେବର କରିଛନ୍ତି ଦୂର ଏ କଥା ହେବାରୁ ଶ୍ରବ
ହିମାକ୍ତ ନଳିନ ସଦୃଶ ମଳିନ ନେତ୍ର ହେଲା ଆରକ୍ତାକ୍ଷୀ
(୩ୟ ସର୍ଗ)

ଅପ୍ରତ୍ୟାଶିତ ଭାବରେ ସୀତା ଦେବର ଲକ୍ଷ୍ମଣଙ୍କଠାରୁ ଶୁଣିଛନ୍ତି ରାମଚନ୍ଦ୍ରଙ୍କର ନିଷ୍ଠୁର ନିର୍ବାସନ ଆଦେଶ । ଅବିରଳ ଭାବରେ ତାଙ୍କ ଚକ୍ଷୁରୁ ଝରିଯାଉଥିବା ଲୋତକ ଧାର ବକ୍ଷ ଉପରେ ବହିଯାଉଅଛି । ଗଙ୍ଗାଧରଙ୍କ କଳ୍ପନାରେ ତାହା ସନ୍ଧ୍ୟାପଦ୍ମର ସରସୀରେ ପ୍ରଦୋଷକାଳୀନ ମୁଦ୍ରିତ ପଦ୍ମ ଉପରେ ଚନ୍ଦ୍ରକର ଶୀକର ପଡ଼ିଯାଉଛି ? ଉପମେୟ ଓ ଉପମାନ ମଧ୍ୟରେ ସାମ୍ୟ ଦୃଷ୍ଟିରୁ ବିଚାର କଲେ ଏ କ୍ଷେତ୍ରରେ ଆନୁପାତିକ ସମୃତ ଭଣନ ନାହିଁ ଲକ୍ଷ୍ୟ କରାଗଲେ ମଧ୍ୟ ସୀତାଙ୍କ ବକ୍ଷ ଦେଶକୁ ମୁଦ୍ରିତ ପଦ୍ମର ଉପମାନ ପ୍ରଦାନ କରି କବି ମେହେର ସ୍ୱାତନ୍ତ୍ର୍ୟପୂର୍ଣ୍ଣ କଳ୍ପନା ଦ୍ୱାରା ନିଜକୁ ପ୍ରଭାବିତ କରିଥିବା ପ୍ରସ୍ତୁତଃ ସୂଚିତ ହୋଇଥାଏ । ଦ୍ୱିତୀୟ ଦୃଷ୍ଟାନ୍ତଟିରେ ଉକ୍ତ ଏକ ସାମ୍ୟ ବିଚାର ଧ୍ୱନିତ ହୋଇଛି । ସୀତାଙ୍କ ମୁଖକୁ କମଳର ଉପମାନ ପ୍ରଦାନ କରି ସ୍ୱାମୀଙ୍କ ପ୍ରଶସ୍ତ ଲଲାଟର ସିନ୍ଦୁର ବିନ୍ଦୁକୁ କବି ବର୍ଣ୍ଣନା କରିଛନ୍ତି ପୂର୍ଣ୍ଣିମା ଚନ୍ଦ୍ର ସଦୃଶ । କମଳ ସୁନ୍ଦର । ସୁନ୍ଦର ପୁଣି ମାର୍ଜିତ ଶରତର ପୂର୍ଣ୍ଣଚନ୍ଦ୍ର । କିନ୍ତୁ, ପୂର୍ଣ୍ଣଚନ୍ଦ୍ରଙ୍କ ଅବସ୍ଥାନରେ କବି-ପ୍ରସିଦ୍ଧି ଦୃଷ୍ଟିରୁ କମଳ ହୁଏ ମୁଦ୍ରିତ, ମଳିନ । ସୀତାଙ୍କ ମୁଖର ପଦ୍ମଶୋଭା ପୁଣି ତାତ୍କାଳୀନ ଅବସ୍ଥା ଦୃଷ୍ଟିରୁ ନେତ୍ର ଶୋଭାର ମଳିନତାର ସ୍ପଷ୍ଟ ପ୍ରଭାବ ଚମତ୍କାର ଶବ୍ଦରେ ପ୍ରତିଫଳିତ ହୋଇଅଛି । ପୁଣି, ଏ ସ୍ଥଳରେ ବ୍ୟଞ୍ଜିତ ହୋଇଛି, ପତିବ୍ରତା ସୀତାଙ୍କ ମୁଖର ମଳିନତାର କାରଣ ହୋଇଛନ୍ତି ଏକ ପତ୍ନୀବ୍ରତ ରାଜନକାଶ ସ୍ୱୟଂ ସ୍ୱାମୀ ରାମଚନ୍ଦ୍ର ।

ତୃତୀୟ ଦୃଷ୍ଟାନ୍ତଟି ମଧ୍ୟରେ କବି ଗଙ୍ଗାଧର ମେହେରଙ୍କ ଅପ୍ର-କଳ୍ପ ପ୍ରୟୋଗ ଜନିତ ଚମତ୍କାରିତା ଲକ୍ଷ୍ୟଣୀୟ । ପୂର୍ବ ପର୍ଯ୍ୟାୟରେ ଉପେନ୍ଦ୍ର ଭଞ୍ଜ ମଧ୍ୟ ସୀତାଙ୍କ ମୁଖ ନିମିତ୍ତ ପଦ୍ମକୋଶର ଉପମାନ ପ୍ରଦାନ କରିଥିବା ଲକ୍ଷ୍ୟଯାଇଅଛି । ସାଧାରଣ ଭାବରେ ଦୁଇ ସର୍ବ ସ୍ଥଳରେ ସୀତାଙ୍କ ମୁଖ କାନ୍ତିର ସରସ ଅଭିବ୍ୟକ୍ତି ହିଁ ଉଦ୍ଦିଷ୍ଟ । କିନ୍ତୁ, ଗଙ୍ଗାଧରଙ୍କ ଉକ୍ତ ଅପ୍ରକଳ୍ପଟି ମଧ୍ୟରେ ଟେଖିର ଭାବ-ବ୍ୟଞ୍ଜନା ଲକ୍ଷ୍ୟଣୀୟ ।

ଗଙ୍ଗାଧରଙ୍କ ସୀତା ପରିଧାନ କରିଛନ୍ତି ଏକ ପଦ୍ମ-ବର୍ଣ୍ଣ ରଙ୍ଗର ଶାଢ଼ି । କିନ୍ତୁ, ଉପେନ୍ଦ୍ର ଭଞ୍ଜଙ୍କ ସୀତା ବୈଦେହୀଙ୍କ ସେ ହାଟିମା ଭାବରେ ଦୂର୍ବାଦଳ ରଙ୍ଗର ଶାଢ଼ି ପରିଧାନ କରିବା ଲକ୍ଷ୍ୟ କରାଯାଇଅଛି (ତାନ୍ତୁ ପିନ୍ଧି ଦୂର୍ବାଦଳ ମଳଲେଜ କୋଳାଇଛି ଶ୍ରୀରାମଙ୍କ ଯେ – ୧୦।୧୭)

ପଦ୍ମ-ବନର ମଧ୍ୟରେ ପଦ୍ମକେଶରର ସ୍ଥିତି ସଦୃଶ, ଅବଗୁଣ୍ଠନବକ୍ଷେ ସୀତାଙ୍କ 'ଶତଦଳ-ଛୁରିତ ଛୁରିର' ଚେଳାଞ୍ଚଳ ମଧ୍ୟରେ ତାହାଙ୍କ ମୁଖମଣ୍ଡଳର ତୁଳନା କରଯାଇଅଛି । ଆର୍ଯ୍ୟ ପରଂପରାର ସୂର୍ଯ୍ୟବଂଶର କୂଳବଧୂ ସୀତା ବାଲ୍ମୀକି ଆଶ୍ରମ ନିକଟରେ ଅବଗୁଣ୍ଠନବକ୍ଷେ ହେବା ସର୍ବାଦୌ ସମୀଚୀନ । ପୁଣି, ତାତ୍କାଳିକ ଅବସ୍ଥାରେ ତାହାଙ୍କ ମୁଖ-ମଣ୍ଡଳରେ ଦୁଃଖ, ଶୋକଜନିତ ମଳିନତାର ସ୍ପଷ୍ଟ ପ୍ରଭାବକୁ ପ୍ରଦର୍ଶିତ କରିବା ଲକ୍ଷ୍ୟରେ ଗଙ୍ଗାଧର ହରିତ୍-ଧୂସର ରଙ୍ଗର ପଦ୍ମ-କେଶର ସଦୃଶ ସୀତାଙ୍କ ମୁଖମଣ୍ଡଳର ସାଦୃଶ କଳ୍ପନା କରିଅଛନ୍ତି । ପଦ୍ମ-କେଶର ଖଣ୍ଡିତ ଭାବରେ ସୁନ୍ଦର । କିନ୍ତୁ, ପଦ୍ମକେଶରର ପାଣ୍ଡୁର ବର୍ଣ୍ଣ ଯଥାର୍ଥରେ ସୀତାଙ୍କ ମୁଖମଣ୍ଡଳର ତାତ୍କାଳିକ ମଳିନତାର ଉତ୍କୃଷ୍ଟ ଉପମାନ । ଏ ମଳିନତାର ସୌନ୍ଦର୍ଯ୍ୟ ମେହେରଙ୍କ ଲେଖନୀରେ ଅପୂର୍ବ ଭାବରେ ଅଭିବ୍ୟକ୍ତ ହୋଇଅଛି । କେବଳ ସେତିକି ନୁହେଁ, ତାତ୍କାଳିକ ଦୁଃଖ ସମ୍ଭୂତ ସୀତାଙ୍କ ଗର୍ଭାବସ୍ଥା ଜନିତ ମଳିନତାର ପ୍ରଭାବ ମୁଖମଣ୍ଡଳରେ ସ୍ପଷ୍ଟ । ଉକ୍ତ ପଦ ମଧ୍ୟରେ ଗଙ୍ଗାଧର ସୀତାଙ୍କ ମୁଖମଣ୍ଡଳର ଦୁଃଖାବସ୍ଥାକୁ ସୌନ୍ଦର୍ଯ୍ୟପୂର୍ଣ୍ଣ କରିଦେଇଛନ୍ତି । ଏ ସୌନ୍ଦର୍ଯ୍ୟକୁ ଯଥାର୍ଥରେ କୁହାଯାଇପାରେ କବିକର୍ମ । କାରଣ, ମଳିନତାକୁ ମଧ୍ୟ କବି ସୁନ୍ଦର ଭାବରେ ଉପସ୍ଥାପନ କରିପାରନ୍ତି । ପରବର୍ତ୍ତୀ ଉଦାହରଣଟିରେ, ଲେଖକ ଜର୍ଜରିତ ସୀତାଙ୍କ ମୁଖମଣ୍ଡଳକୁ 'ହିମାକ୍ରାନ୍ତନଳିନ' ଉପମାନ ପ୍ରଦାନ କରିଯାଇଅଛି । ମୋଟ ଉପରେ ନାରୀ ରୂପର ସୌନ୍ଦର୍ଯ୍ୟ ଅଭିବ୍ୟକ୍ତି ପାଇଁ କବିର ଏକ ପ୍ରତିଷ୍ଠିତ ଆଦର୍ଶ ପ୍ରକୃତି ଜଗତର ଅନ୍ୟତମ ଶ୍ରେଷ୍ଠ ଉପାଦାନ—ପଦ୍ମ । ସେହି ପଦ୍ମ ଉପମାନ ମଧ୍ୟରେ 'ବୈଦେହୀଶ ବିଳାସ'ର ସୀତାଙ୍କ ସୌନ୍ଦର୍ଯ୍ୟ ଯେପରି ପ୍ରତିଷ୍ଠିତ, ମେହେରଙ୍କ 'ତପସ୍ୱିନୀ' ମଧ୍ୟ ସେହିପରି ଶକ୍ତିଶାଳୀ ରୂପରେ ବ୍ୟଂଜିତ । ସୀତାଙ୍କ ଜୀବନର ପରିବର୍ତ୍ତନ ଉଭୟ କାବ୍ୟ ମଧ୍ୟରେ ଯେପରି ଲକ୍ଷ୍ୟଣୀୟ, ଉଭୟ କାବ୍ୟରେ ପରିବେଷିତ 'ପଦ୍ମ' ଉପମାନ ମଧ୍ୟରେ ତାଦୃଶ ପରିବର୍ତ୍ତନ ମଧ୍ୟ ଲକ୍ଷ୍ୟ କରିଯାଇପାରେ ।

ନାସାକୁ ନଳୀ ବା ପୁଷ୍ପକଳୀର ଉପମାନ ପ୍ରଦାନ କରିବା କାବ୍ୟ ଜଗତରେ ପ୍ରକୃତଃ ଏକ ଅନୁସୃତ ଆଦର୍ଶ । ଏତଦ୍‌ବ୍ୟତୀତ ନାସାର ଅଗ୍ର ଲାବଣ୍ୟକୁ ଜଳର ସ୍ୱଚ୍ଛତା ସଦୃଶ ଏବଂ କେଶପାଶକୁ

ଜଳର ଗାଢ଼ କୃଷ୍ଣବର୍ଣ୍ଣ ସହିତ କଳ୍ପନା କରାଯାଇଥିବା ଲକ୍ଷ୍ୟ କରାଯାଏ । ଉପେନ୍ଦ୍ର ଭଞ୍ଜ 'ବୈଦେହୀଶ ବିଳାସ' କାବ୍ୟରେ ସୀତାଙ୍କ ନିମିତ୍ତ ଏ ଦୃଷ୍ଟିରୁ ବହୁ ଉପମାନ ପ୍ରଦାନ କରିଯାଇଅଛନ୍ତି । ତନ୍ମଧ୍ୟରୁ କେତେଗୋଟି ଉତ୍କୃଷ୍ଟ ଉପମାନର ବିଶ୍ଳେଷଣ କରାଯାଉଅଛି ।

୧ । ବିଧାନ ହୋଇଛି ଯା ନାମ ସୀତା
ବର୍ଣ୍ଣରେ ଶୋଭା ଅତି ମଧୁରତା ।
ବୃନ୍ତ ନେଶ ଆଜ୍ଞା ନହିବ ପରଶ
ବିଶେଷେ କହିଁ ଦଇ ହୃତକ୍ଲେଶ ।  (ବୈ. ବି. ୧।୨)

୨ । ବ୍ରହ୍ମପୁତ୍ର ଜହ୍ନୁଜାର ଗୂଢ଼ପୃଷ୍ଠ୍ୟା ଯୋଗେ
ବରୁଣାଳୟ କୃପାରେ ଯେ ସେ ସୀତା ସଙ୍ଗେ ।
(ବୈ. ବି. ୫୨।୨)

୩ । "ବନେଲକଲ୍ଲ ସେହି ତିନ ଜଣଙ୍କୁ ।
ବଗୁରମାନ ଆଣିଲ ମନକୁ ।

ବେଣୀ ତୀରେ ଚମ୍ପା ତମାଳ ତରୁ ।
ବଜ୍ର ବୃକ୍ଷେ କେ ପଥ କେ ବରୁ ।

ବହୁଛି, ମଧ୍ୟେ ନୀଳବର୍ଣ୍ଣ ସର ।
ବାରିଦ, କୁମୁଦ, କହ୍ଲାରେ ସାର ।"
(ବୈ. ବି. ୨୧।୮)

ସୀତା ନାମର ଏକ ଅର୍ଥ ହେଉଛି ସ୍ୱର୍ଗଗଙ୍ଗାର ଶାଖା ନଦୀ ଅଥବା ଗଙ୍ଗାନଦୀ । ସେହି ନାମର ଅର୍ଥଗତ ମହତ୍ତ୍ୱ, ସୀତାଙ୍କଠାରେ ଗଙ୍ଗା ନଦୀର ଉପମାନ ଆବେଗ ମଧ୍ୟରେ ପ୍ରତିଷ୍ଠା କରାଯାଉଅଛି । ସୌନ୍ଦର୍ଯ୍ୟ ସହିତ ପବିତ୍ରତାର, ସମନ୍ୱିତ ମନୋଜ୍ଞ ଆଲେଖ୍ୟ—ସୀତା । ତାହାଙ୍କର ସୌନ୍ଦର୍ଯ୍ୟ ଯେପରି କ୍ଳେଶହାରୀ ତାହା ସେପରି ପବିତ୍ର ମଧ୍ୟ । ଅତଏବ, ଦର୍ଶକ, ସୀତାଙ୍କ ପବିତ୍ର ସୌନ୍ଦର୍ଯ୍ୟ ଅବଲୋକନ କରି ଆପେ ପବିତ୍ର ହୋଇଯାଏ । ବିଷ୍ଣୁଙ୍କ ଅବତାର କରୁଣା ସାଗର ରାମଚନ୍ଦ୍ରଙ୍କୁ ସାଗର ଉପମାନ ପ୍ରଦାନ କରି ସୀତାଙ୍କୁ ଗଙ୍ଗାନଦୀ ସହିତ ସାଦୃଶ୍ୟ

କଳ୍ପନା କରିବା ମଧ୍ୟ ଗଙ୍ଗାଧର ଭାବଧର୍ମୀ ହୋଇପାରିଛି । ଏତଦ୍‌ବ୍ୟତୀତ, ଉପର୍ଯ୍ୟୁକ୍ତ ବୃକ୍ଷୀୟ ଦୃଷ୍ଟାନ୍ତଟି ମଧ୍ୟରେ ସୀତାଙ୍କୁ ଲାବଣ୍ୟ ସରର ପ୍ରବାହିତ ରୂପ ପ୍ରଦାନ କରିବା ସର୍ବାଧିକ ମନୋଜ୍ଞ । ସ୍ୱାମୀ ରାମଚନ୍ଦ୍ର ଓ ଦେବର ଲକ୍ଷ୍ମଣଙ୍କ ସହିତ ସୀତା ବନପଥରେ ଯାତ୍ରା କରୁଛନ୍ତି । ଏ ଦୃଶ୍ୟର ସାମ୍ୟକଳ୍ପନା କବି ଉପେନ୍ଦ୍ର ଭଞ୍ଜ କରୁଛନ୍ତି ଏହିପରି । ଏକ ତଟଦେଶରେ ପୁଷ୍ପିତ ଚମ୍ପା (ଲକ୍ଷ୍ମଣ) ଏବଂ ଅନ୍ୟ ତଟଦେଶରେ ଘନ ମହାନ୍ଧାରିତ ତମାଳ ବୃକ୍ଷ (ରାମଚନ୍ଦ୍ର) ମଧ୍ୟରେ ପ୍ରବାହିତ ହେଉଅଛି ଲାବଣ୍ୟସର (ସୀତା) । ଏ ଅପୂର୍ବ ଦୃଶ୍ୟ ଦେଖୁଅଛି ଭରଧ ରାକ୍ଷସ । ନେ ପୁଣି ଚୋରାଏ ପୁଷ୍ପିତ ଫଳିତ ବୃକ୍ଷପରି ଦେଖାଯାଉଅଛି । ବନ ପ୍ରକୃତି ମଧ୍ୟରେ ଏ ମାନବ ଯାତ୍ରୀମାନଙ୍କ ପାଇଁ ସେହି ପ୍ରକୃତିରୁ ସଂଗୃହୀତ ବୃକ୍ଷ ଓ ନଦୀର ଉପମାନ ପ୍ରଦାନ କରିବା ପରିବେଶ ଦୃଷ୍ଟିରୁ ଯେପରି ତାତ୍ପର୍ଯ୍ୟପୂର୍ଣ୍ଣ, ଅର୍ଥ ଗୌରବ ଦୃଷ୍ଟିରୁ ସେହିପରି ମହତ୍ତ୍ୱ ଦ୍ୟୋତିତ ମଧ୍ୟ । ପ୍ରବାହିତ ଲାବଣ୍ୟସର ମଧ୍ୟରେ କମଳ, କୁମୁଦ ତଥା କହ୍ଲାର ପୁଷ୍ପ ଶୋଭା ପାଉଅଛି । ପୁଣି, ବାତାନ୍ଦୋଳିତ ମୀନଲୋଚନ ଏବଂ ମତ ମରାଳୀ ସଦାସ୍ୱତାରେ ତାହା ଅତ୍ୟନ୍ତ ଶୋଭିତ ଦେଖାଯାଉଅଛି । ସୁନ୍ଦରୀ ସୀତାଙ୍କ କେଉଁ ଅଙ୍ଗର ଚମତ୍କାର ବର୍ଣ୍ଣନା ନଦୀ ଗର୍ଭରେ ଥିବା ବିବିଧ ପୁଷ୍ପ ଓ ପକ୍ଷୀଙ୍କ ଉପମାନ ପ୍ରୟୋଗ ମାଧ୍ୟମରେ କରାଯାଇପାରିଛି । ଏ ଦୃଶ୍ୟର ବର୍ଣ୍ଣନା ଯଥାର୍ଥରେ ସୃଷ୍ଟି କରିଛି ଏକ ଉପମାନ ସୌନ୍ଦର୍ଯ୍ୟ । ଉପେନ୍ଦ୍ର ଭଞ୍ଜଙ୍କ ସୂକ୍ଷ୍ମ ସୌନ୍ଦର୍ଯ୍ୟଚେତନାର ସ୍ପର୍ଶ ଏ ବର୍ଣ୍ଣନା ମାଧ୍ୟମରେ ଲକ୍ଷ୍ୟଣୀୟ ।

ତଦ୍ଭିନ୍ନ ସୀତାଙ୍କ ଆଭ୍ୟନ୍ତର ମହତ୍ତ୍ୱ ପ୍ରତିପାଦନ ଲକ୍ଷ୍ୟରେ କବି ମେଘଦୂତର ମଧ୍ୟ ସୀତାଙ୍କ ନିମିତ୍ତ, ସହିତ ବିଶେଷତଃ 'ଜାହ୍ନବୀ'ର ଉପମାନ ପ୍ରଦାନ କରିଯାଇଛନ୍ତି । ଏ ସ୍ଥଳରେ ମଧ୍ୟ ସୌନ୍ଦର୍ଯ୍ୟ ସହିତ ପବିତ୍ରତାର ସମନ୍ୱିତ ମହତ୍ତ୍ୱକୁ ସୀତା ଚରିତ୍ର ମଧ୍ୟରେ ପ୍ରତିପାଦନ କରିବା ହିଁ କବି ଗଙ୍ଗାଧରଙ୍କ ଲକ୍ଷ୍ୟ ।

(୧) ସ୍ରୋତସ୍ୱତୀ ଗତ ସତତ ଥାଏ ସାଗର ଆଶେ
ଲଙ୍ଘେ ଶିଳ-ଶୈଳ-ସଂକଟ ଯେବେ ବନ୍ଧୁରେ ଆସେ
ବାରିଧି ସଂଗମେ ହୃଦୟରେ ସବୁ ବିଗତ କ୍ଲେଶ
ଉଭୟ ଜୀବନେ ନ ରହେ ଆଉ ପ୍ରଭେଦ ଲେଶ । (୨ୟ ସର୍ଗ)

(୨) 'ନଦୀର' ସରିତ-ସ୍ରୋତ ସଦୃଶ
ସତ୍ତା-ପ୍ରାଣ ହୋଇ ଆସିଲା କୁଶ" (୧୦ ସର୍ଗ)

(୩) "ଏବେ ବା ଗ୍ରାବଳୀ ଜାହ୍ନବୀ ଅବା ମୂର୍ତ୍ତିମତୀ କି
ନୈତିକ-କଲ୍ଲୋଳେ ଉପାଜୁଛନ୍ତି ବସୁମତୀ କି ?" (୨ୟ ସର୍ଗ)

ପ୍ରଥମ ଦୃଷ୍ଟାନ୍ତଟି ଗୋଟିଏ ନିଦର୍ଶନା ଅଳଙ୍କାର । ଏହାର ସହାୟତାରେ ସୀତାଙ୍କ ଜୀବନ-ପ୍ରବାହକୁ ସ୍ରୋତସ୍ୱତୀର ପ୍ରବାହ ସହିତ ସାମ୍ୟ କଳ୍ପନା କରାଯାଇଅଛି । ଏବଂ ତା'ର ଗତି ପଥରେ ଆସୁଥିବା ସମସ୍ତ ବାଧାବିଘ୍ନ, ସମସ୍ୟା ଓ ସଙ୍କଟକୁ ସେ ଯେପରି ସାଗର ସଂଗମ ଆଶାରେ ଉଲ୍ଲଂଘନ ପୂର୍ବକ ଅଗ୍ରସର କରିଯାଏ ଏବଂ ପରିଶେଷରେ ସାଗର ସହିତ ମିଳିତ ହୋଇ ସମସ୍ତ ଚେତନାକୁ ବିସ୍ମୃତ ହୁଏ; ଠିକ୍ ସେହିପରି, ତାତ୍କାଳିକ ଅବସ୍ଥାକୁ ନିରୀକ୍ଷଣ ଋଷି ବାଲ୍ମୀକି ସୀତାଙ୍କ ଉଦ୍ଦେଶ୍ୟରେ ଏତାଦୃଶ ଆଶୀର୍ବାଦ ଗର୍ଭକ ଭବିଷ୍ୟ ବାଣୀ ପ୍ରଦାନ କରୁଛନ୍ତି ।

ପୂର୍ବରୁ କୁହାଯାଇଅଛି, କବି କଳ୍ପନାରେ ନାରୀ ସହିତ ନଦୀର ତୁଳନା ଏକ ସ୍ୱୀକୃତ ଆଦର୍ଶ । ଉପେନ୍ଦ୍ର ଭଞ୍ଜ, ସୀତା ଉପମେୟ ନିମିତ୍ତ ସ୍ଥଳ ବିଶେଷରେ ନଦୀର ଉପମାନ ଅର୍ଥ-ଗୌରବର ସହାୟତାରେ ପ୍ରଦାନ କରିଯାଇଛନ୍ତି । ସୀତା ଜୀବନର ଉତ୍ତରକାଣ୍ଡରେ ଯେଉଁ ଗଭୀର ଦୁଃଖ ଲକ୍ଷ୍ୟ କରାଯାଇଅଛି, ସେହେତୁ କବି ସେହି ଜୀବନର ତାଦୃଶ ଦୁଃଖାବହ ଅବସ୍ଥାର ଅଭିବ୍ୟକ୍ତି ନିମିତ୍ତ 'ସରିତ' ଉପମାନର ପ୍ରୟୋଗ ମଧ୍ୟରେ ଯେଉଁ ବିଶେଷଣର ସଂଯୋଗ କରିଛନ୍ତି, ତାହା 'ନଦୀର' ଦୁଃଖ ଭାବନା ମଧ୍ୟରେ ଏବଂ ଭବିଷ୍ୟତର ଅନିଶ୍ଚିତ ଅବସ୍ଥା ଆଶଙ୍କାରେ ସୀତାଙ୍କ ଜୀବନରୁ ସକଳ ଆଶା ଓ ସମ୍ଭାବନା ଯେତେବେଳେ ଧୀରେ ଧୀରେ ବିଲୁପ୍ତ ହୋଇଯାଉଛି, ସେ ମାନବ-ପରିତ ନଦୀର ପ୍ରାଣଶୂନ୍ୟତା ମଧ୍ୟରେ ଯେପରି ପରିଦର୍ଶନ, ଶୁଷ୍କ ହୋଇଯାଉଛି । ଅତଏବ, ସୀତାଙ୍କ ଜୀବନକୁ ସରିତ ସହିତ ସାମ୍ୟକଳ୍ପନା କରିବା ଏବଂ ସେହି ଜୀବନର ପରିଣତିକୁ ଲକ୍ଷ୍ୟ ରଖି ଉପମାନ ସରିତ ସହିତ 'ନଦୀର' ବିଶେଷଣକୁ ସଂଯୋଗ କରିବା ମଧ୍ୟରେ ସୀତା ଜୀବନର ପରିଣତି ଉଭୟ କାବ୍ୟ ମଧ୍ୟରେ ଯଥାର୍ଥ ଭାବରେ ଉପମାନ ପ୍ରୟୋଗ ସହାୟତାରେ ସଫଳ ଅଭିବ୍ୟକ୍ତି ଲାଭ କରିଛି ବୋଲି କୁହାଯାଇପାରେ ।

'ବୈଦେହୀଶ ବିଳାସ' ଓ 'ତପସ୍ୱିନୀ' ଉଭୟ କାବ୍ୟ ମଧ୍ୟରେ ସୀତାଙ୍କ ନିମିତ୍ତ ପ୍ରଯୁକ୍ତ ହୋଇଥିବା ଶତଦଳର ଉପମାନ ଲକ୍ଷ୍ୟ କରାଯାଇଅଛି । ପୂର୍ବରୁ କୁହାଯାଇଅଛି, ଶତଦଳର ଉପମାନ ମଧ୍ୟରେ ସୀତା ଚରିତ୍ରର ଆଭ୍ୟନ୍ତରୀଣ ମହତ୍ତ୍ୱ, ପବିତ୍ରତା ତଥା ସୌନ୍ଦର୍ଯ୍ୟର ସଫଳ ଅଭିବ୍ୟଞ୍ଜନା ସଂଘଟିତ ହୋଇଛି ।

'ସୀତା'ଙ୍କ ନିମିତ୍ତ 'ଆକାଶ'ର ଉପମାନ ମଧ୍ୟ ଉଭୟ କାବ୍ୟ ମଧ୍ୟରେ ଲକ୍ଷ୍ୟ କରାଯାଇଛି । ଉକ୍ତ ଉପମାନ ପ୍ରୟୋଗରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏବଂ ସ୍ୱଭାବ କବି ଗଙ୍ଗାଧର ମେହେର ନିଜ ନିଜର ଦକ୍ଷତା ସଫଳ ଭାବରେ ପ୍ରଦର୍ଶନ କରିପାରିଛନ୍ତି ।

"ଫାଲ୍ଗୁଣୀ ପ୍ରାଚୀ ମାଧୁରୀ, ଦେଖ ମ୍ଳାନ ସନ୍ଧ୍ୟା ପରି
ରମ୍ଭ ସଦୃଶାର ଚନ୍ଦ୍ର କର ତାର କଥା ହେଲେ ସ୍ୱେଦ ଭରି"
(ବୈ.ବି-୩୩।୨୮)

"ବିରସ ଶୋଣ-କିରଣ ରଞ୍ଜିତ ନଭ
ପରସ୍ପେ ଭାଗ୍ୟ ଶେଷେ ହେଲା ମୋ ଗର୍ଭ,"
(ତପସ୍ୱିନୀ-୨ ସର୍ଗ)

ପ୍ରଥମ ଦୃଷ୍ଟାନ୍ତ ମଧ୍ୟରେ କବି ଉପେନ୍ଦ୍ର ଭଞ୍ଜ ସୀତା ଓ ରାମଚନ୍ଦ୍ରଙ୍କ ସହାବସ୍ଥାନର ଏକ ତୁଳନାତ୍ମକ ମଧୁର ଚିତ୍ର ପ୍ରଦାନ କରିଛନ୍ତି । ସୀତାଙ୍କ ଭାଲପଟରେ ରାମଚନ୍ଦ୍ରଙ୍କ କର୍ତ୍ତୃକ ଅଙ୍କିତ ହୋଇଥିବା ଗୈରିକ ରଙ୍ଗ ଏବଂ ରାମଚନ୍ଦ୍ରଙ୍କ ହୃଦୟ ଦେଶରେ ବିଲେପିତ ହୋଇଥିବା ଭସ୍ମ; ପରସ୍ପର ଆଲିଙ୍ଗନ ପାଇଁରେ ଆବେଶ ହେବାପରେ ରାମଚନ୍ଦ୍ରଙ୍କ ହୃଦ୍‌ଦେଶ ଗୈରିକ ବର୍ଣ୍ଣାଙ୍କ ଏବଂ ସୀତାଙ୍କ ହୃଦଦେଶ ଭସ୍ମ ବର୍ଣ୍ଣରେ ମନୋଜ୍ଞ ଦେଖାଗଲା । ଏ ଅବସ୍ଥାକାଳୀନ ଚିତ୍ରକୁ ଉପେନ୍ଦ୍ର ଭଞ୍ଜ ଅସ୍ତରାଗ ରଞ୍ଜିତ ସାୟଂକାଳୀନ ପଶ୍ଚିମାକାଶ (ରାମଚନ୍ଦ୍ର) ଏବଂ ଅଧୂଳର ଶୋଭିତ ସାୟଂକାଳୀନ ପୂର୍ବାକାଶ (ସୀତା) ମଧ୍ୟରେ ବ୍ୟଞ୍ଜନା କରିଛନ୍ତି । ଏତାଦୃଶ କବି କଳ୍ପନା ଯଥାର୍ଥରେ ଚମତ୍କାର ।

ପୂର୍ବ ଚିତ୍ରକଳ୍ପଗୁଡ଼ିକ ମଧ୍ୟରେ ସୀତାଙ୍କ ଚରିତ୍ରର ବର୍ଣ୍ଣିତ ରୂପ 'ତପସ୍ୱିନୀ'କାବ୍ୟ ମଧ୍ୟରେ ଯେପରି ଅଭିବ୍ୟକ୍ତ ହୋଇଛନ୍ତି;ଅନୁରୂପ ଭାବରେ

'ଆକାଶ' ଶବ୍ଦକଳ୍ପ ମଧ୍ୟରେ ତାଦୃଶ ପରିବର୍ତ୍ତନ ମଧ୍ୟ ଲକ୍ଷଣୀୟ । ଭାଗ୍ୟ ସଜ୍ଜିତ ଆକାଶର କଳ୍ପନା ଏକ ପାରଂପରିକ ଚିତ୍ର ବୋଲି କୁହାଯାଇପାରେ । କିନ୍ତୁ ବସନ୍ତ ଶେଷର ଅସ୍ତରାଗ ରଞ୍ଜିତ ଆକାଶ, ସୌଭାଗ୍ୟର ଶେଷାବସ୍ଥାରେ ସୀତାଙ୍କ ଗର୍ଭୋଦୟ ଅବସ୍ଥାର ସାମ୍ୟ କଳ୍ପନା ବସ୍ତୁତଃ ଅତ୍ୟନ୍ତ ଭାବ ଗର୍ଭକ । ବସନ୍ତ ଶେଷ ହୋଇ ଆସିଲେ ମଧ୍ୟ ପଶ୍ଚିମାକାଶ ଅସ୍ତରାଗର ସମାବେଶ ମଧ୍ୟରେ ଚମତ୍କାର ଦେଖାଯାଏ । ସୀତାଙ୍କ ସୌଭାଗ୍ୟ ଶେଷର ଆଶଙ୍କା ମଧ୍ୟରେ ତାହାଙ୍କର 'ଗର୍ଭୋଦୟ' ଥିଲା ତାଦୃଶ ଆନନ୍ଦଦାୟକ ।

'ବୈଦେହୀଶ ବିଳାସ' କାବ୍ୟର ପଞ୍ଚବିଂଶ ଛାନ୍ଦ (ନବମ ପଦ)ରେ କବି ଉପେନ୍ଦ୍ର ଭଞ୍ଜ ରାମଚନ୍ଦ୍ରଙ୍କ ମୁଖରେ ପ୍ରକାଶ କରିଛନ୍ତି ଯେ ସୀତା, କରୁଣାର ଏକ ବୃକ୍ଷ ଏବଂ ସେହି କରୁଣା-ବୃକ୍ଷରେ ନୈରାଶ୍ୟର ଫଳ କେବେ ବି ସମ୍ଭବ ନୁହେଁ । ସୀତାଙ୍କ ପ୍ରତି କରୁଣା-ବୃକ୍ଷ ଭଳି ଏକ କାଳ୍ପନିକ ଅଳଂକାର ଉପେନ୍ଦ୍ର ଯେଉଁଭଳି ଭାବରେ ପ୍ରୟୋଗ କରିଛନ୍ତି; ମେହେର କବି ମଧ୍ୟ 'ତରଳା ଜଗତେ କରୁଣା କରି ସ୍ୱର୍ଗରୁ ଗଳି; ପର ଦୁଃଖ ତାପେ କ୍ରମଶଃ ଭାବେ ଯାଉଛି ଜଳି,'' (୨ୟ ସର୍ଗ)ର ପରିକଳ୍ପନା କରି ପାରିଛନ୍ତି । ମାନବ ପ୍ରକୃତି ମଧ୍ୟରେ କରୁଣା ଏକ ସ୍ୱର୍ଗୀୟ ବିଭୂତି । ପରଦୁଃଖରେ କାତର ହୋଇ ମାନବ ହୃଦୟର କରୁଣା ବିଗଳିତ ହୁଏ । ମୁନି କୁମାରୀଗଣ ସୀତାଙ୍କ ଅଶ୍ରୁ ବିଗଳିତ କାତର ଅବସ୍ଥା ଲକ୍ଷ୍ୟକରି ସମ୍ଭାବନା କରୁଛନ୍ତି, ସତେଯେପରି ସ୍ୱର୍ଗୀୟ କରୁଣାର ପ୍ରତିମୂର୍ତ୍ତି ଲତିକା ରୂପରେ ସ୍ୱର୍ଗରୁ ପତିତ ହୋଇ ବିଗଳିତ ହୋଇଯାଉଛନ୍ତି । କରୁଣା ବୃକ୍ଷ ଏବଂ ସେଥିରେ ହର୍ଷଦା ଆଶା ତଥା ଆନନ୍ଦର ଫଳକୁ ସମ୍ଭାବନା କରିବା ଅପେକ୍ଷା ସ୍ୱର୍ଗୀୟ କରୁଣାର ବିଗଳିତ ଅବସ୍ଥାର ମନୋଜ୍ଞ ଚିତ୍ର ଅଧିକ ହୃଦ୍ୟ ମନେ ହୋଇଅଛି । ଏହା ମଧ୍ୟ ସୀତା ଚରିତ୍ରର ପରିବର୍ତ୍ତନ ମୂଳକ ଚିତ୍ର ପ୍ରଦାନ ଦୃଷ୍ଟିରୁ ଅଧିକ ସମୀଚୀନ ତଥା ମନୋଜ୍ଞ ।

ସୀତାଙ୍କର ଶାରୀରିକ କାନ୍ତିର ଅଭିବ୍ୟକ୍ତି ନିମିତ୍ତ ଉଭୟ କବି ଉପମାନର ସମ୍ଭାବନା କରିଯାଇଛନ୍ତି । 'ବୈଦେହୀଶ ବିଳାସ' କାବ୍ୟରେ ସୀତାଙ୍କର ଦେହଜ କାନ୍ତିର ସ୍ୱରୂପ ମୁଖ୍ୟତଃ ଦ୍ୱିବିଧ ରୂପରେ ପ୍ରକାଶିତ । ତନ୍ମଧ୍ୟରୁ ଗୋଟିଏ ସୀତାଙ୍କ ଶରୀରର ସ୍ୱାଭାବିକ କାନ୍ତି ଏବଂ ଅପରଟି

ବିରହାବସ୍ଥାରେ ତାହାଙ୍କର ଶରୀରର ଶୀର୍ଣ୍ଣତା ସତ୍ତ୍ୱେ ସେ କାନ୍ତିର ଓଜସ୍ୱୀ ।

୧) "ବିଗତ ଜ୍ୟୋତିରଙ୍ଗଣ ରଜନୀରେ ଦେଖାଇ
ବିଲୁପ୍ତ ପ୍ରଭାତ ପ୍ରଭା ଯେମନ୍ତ ଭରଇ ।" (୭।୭୧)

୨) "ତପ୍ତକାନ୍ତ ନ ସ୍ୱର୍ଣ୍ଣକାନ୍ତ ବଦନ ଅନାଇଲ
ତାନ ବଢ଼ାଇ ଅଗ୍ନିରେ ଦଗ୍ଧ ଶିଳେ ଲଗାଇ ଦେଲ
ବଣିକ ଶ୍ରେଣୀ ଅସମ ଜାଣି ଦେଲେ ପ୍ରହାର ଦାନ
ଲଗାଇ ଭୂଜେ ଉତ୍ତଏ ବୋଲେ ତେଜିତ ଲକ୍ଷ୍ୟ ସେନ ।"
(୮।୩)

(ଉକ୍ତ ଛାନ୍ଦର ପଙ୍କ୍ତିଶ୍ରେଣୀ ପଦମାନଙ୍କରେ ମଧ୍ୟ ସୀତାଙ୍କ ତପ୍ତ-କାନ୍ତ ବିଜୁଳି ଓ କୁଙ୍କୁମଠାରୁ ମଧ୍ୟ ଅଧିକ ତେଜୋଦୀପ୍ତ ଓ ରମଣୀୟ ବୋଲି ପ୍ରତିପାଦନ କରାଯାଇଅଛି ।)

୩) "ଚନ୍ଦ୍ରମୁଖୀ ବୋଲି ମୋର ତାକୁ ଚିହ୍ନିବ ଯେ ଯୋଗ୍ୟ କରିଥିବ ଧାତ୍ର
ଅଶୀର୍ଣ୍ଣ ଶୋଭେଷା ଇନ୍ଦୁ ତଣ୍ଡୁରୁ ଫୁଟି ପଡ଼ିଲ ଦେଖ ପଦ ।"
(୨୯।୨୧)

ଉପେନ୍ଦ୍ର ଭଞ୍ଜ ସୀତାଙ୍କ ଶାରୀରିକ କାନ୍ତିର ଅଭିବ୍ୟକ୍ତି ନିମିତ୍ତ ପ୍ରଜ୍ୱଳିତପ୍ରଭା, ସୁବର୍ଣ୍ଣ, ବିଦ୍ୟୁତ ତଥା କୁଙ୍କୁମର ଚମତ୍କାର କଳ୍ପନା କରିଯାଇଛନ୍ତି । ଏହା ସତ୍ତ୍ୱେ, ବିରହାବସ୍ଥାରେ ରାମଚନ୍ଦ୍ରଙ୍କ କଳ୍ପନାରେ ସୀତାଙ୍କ କାନ୍ତି ଅଧିକ ଚମତ୍କାର ଭାବରେ ଅଭିବ୍ୟକ୍ତ ହୋଇଛି ଉପର୍ଯ୍ୟୁକ୍ତ ତୃତୀୟ ଦୃଷ୍ଟାନ୍ତ ମଧ୍ୟରେ । ସୀତାଙ୍କ ଶାରୀରିକ ଶୀର୍ଣ୍ଣତା ରାବଣ କର୍ତ୍ତୃକ ଅପହରଣ ଜନିତ ଦୁଃଖ ଓ ବିରହ ଜନିତ କାରୁଣ୍ୟ ମଧ୍ୟରେ ଅପରିହାର୍ଯ୍ୟ । ବାରିବାହକୁ ଲକ୍ଷି ରାମଚନ୍ଦ୍ର ସୀତାଙ୍କୁ ଚିହ୍ନାଇ ଦେବା ପାଇଁ 'ମେଘଦୂତ' ରୀତିରେ କହୁଛନ୍ତି—ଧରଣୀପୁତ୍ରୀ ସେହି ନାରୀକୁ ଚନ୍ଦ୍ରମୁଖୀ ସୀତା ବୋଲି ଚିହ୍ନିବ, ଯାହାର ତେଜ ବାରମ୍ବାର ଖଣ୍ଡିତ ହୋଇ ଅଶୀର୍ଣ୍ଣ ହୋଇଥିବା ଇନ୍ଦୁ ଭଳି ଦେଖାଯାଉଥିବ । ଅର୍ଥାତ, ସେ ଶୀର୍ଣ୍ଣ ଦେଖାଯାଉଥିଲେ ମଧ୍ୟ

ତାହାଙ୍କର କାନ୍ତିର ଔଜ୍ଜ୍ୱଲ୍ୟ ବରଂ ଅଧିକ ପ୍ରସ୍ଫୁଟିତ ହୋଇଥିବ କେବଳ ସେତିକି ନୁହେଁ, ସୀତାଙ୍କ ଧ୍ୟାନଶାୟୀ ଅବସ୍ଥାକୁ ଲକ୍ଷ୍ୟକରି କବି କଳ୍ପନା କରୁଛନ୍ତି—ଚଣ୍ଟିରୁ ଏକ ଶାଣବସା ନେତ୍ରସ୍ବର ଜନ୍ମ ଫିଟିପଡିଲା ତବ ସେ ଦେଖାଯାଉଥିବେ । ରାମଚନ୍ଦ୍ରଙ୍କ ଚଣ୍ଟିରୁ ଜନ୍ମ ସୀତା ସତେ ଯେପରି ଫିଟି ପଡ଼ିଛନ୍ତି ।

‘ତପସ୍ୱିନୀ’ କାବ୍ୟରେ ସୀତାଙ୍କ କାନ୍ତି କନ୍ତୁ ଭିନ୍ନ ଭାବରେ କଳ୍ପନା କରାଯାଇଅଛି । ଉକ୍ତ ସ୍ଥ କାବ୍ୟରେ ‘କେତକୀ’ ଫୁଲକୁ ସୀତାଙ୍କ କାନ୍ତିସ୍ୱରୂପ ସାମ୍ୟ କଳ୍ପନା କରାଯାଇଥିଲେ ମଧ୍ୟ ‘ତପସ୍ୱିନୀ’ କାବ୍ୟରେ ‘ସର୍ବାଙ୍ଗ ଥିଲା ଅମୃତ ସମ, ପୁଷ୍ପେ ଦେଲା ମଧୁ ଅମୃତୋପମ’ (ଦଶମସର୍ଗ)ର ପରିକଳ୍ପନା ସୀତାଙ୍କ ଆଭ୍ୟନ୍ତରୀଣ ମହତ୍ତ୍ୱ ପ୍ରତିପାଦନ ଲକ୍ଷ୍ୟରେ ଉଦ୍ଦିଷ୍ଟ । ପୁନଶ୍ଚ, ‘ତପସ୍ୱିନୀ’ର ସପ୍ତମ ସର୍ଗରେ ସୀତାଙ୍କ ମୁଖରେ ପ୍ରକାଶ କରାଯାଇଅଛି—“ଜୀବନ କି ସାହସ କେତେ ଶୁଣ, କେତେକା ପାଇଁ ପଞ୍ଚ ଅମୃତ ପାନ ।” ସୀତାଙ୍କ କାନ୍ତି କେବଳ ଅମୃତୋପମ ନୁହେଁ ଗଙ୍ଗାଧରଙ୍କ ପରିକଳ୍ପନାରେ ସୀତା ନିଜେ ମଧ୍ୟ ପଞ୍ଚ-ଅମୃତ । ଉକ୍ତ ଚିତ୍ରକଳ୍ପ ମଧ୍ୟରେ ସୀତାଙ୍କ ଆଭ୍ୟନ୍ତରୀଣ ପବିତ୍ରତା ହିଁ ବ୍ୟଞ୍ଜିତ ।

ଅନ୍ୟ ଏକ ଚିତ୍ରକଳ୍ପ ମଧ୍ୟରେ କବି ଉପେନ୍ଦ୍ରଭଞ୍ଜ ସୀତାଙ୍କ ନିମିତ୍ତ ଚନ୍ଦନ ତରୁର ଉପମାନ କଳ୍ପନା କରିଛନ୍ତି । (‘ବଇଦେହୀଶ ବିଳାସ ତେରଶ ଛାନ୍ଦ’ ୩୮।୮) ଅଶୋକ ବନରେ ଅପହୃତା ସୀତାଙ୍କୁ ରାବଣ ରାକ୍ଷସୀ ପରିବେଷ୍ଟିତା କରି ରଖିଅଛି । ତାଙ୍କ ନିଜ ଅବସ୍ଥାରେ କବି-କଳ୍ପନାରେ ସୀତା ଚନ୍ଦନବୃକ୍ଷ ଏବଂ ପରିବେଷ୍ଟିତା ରାକ୍ଷସୀଗଣ ସର୍ପଗୁଡ଼ିକରେ ପରିକଳ୍ପିତ ହୋଇଛନ୍ତି । ଉକ୍ତ ଚିତ୍ରକଳ୍ପ ମଧ୍ୟରେ ସୀତାଙ୍କ ମହତ୍ତ୍ୱ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଏ ସନ୍ଦର୍ଭରେ କବି ଗଙ୍ଗାଧର ମେହେର ସୀତାଙ୍କ ନିମିତ୍ତ ଯେଉଁ ଏକ ବୃକ୍ଷର ଉପମାନ ଦେଇପାରିଛନ୍ତି ତାହା ଅଧିକ ଅର୍ଥଶକ୍ତି ସମନ୍ୱିତ ଏବଂ ସୂକ୍ଷ୍ମ ଦୃଷ୍ଟି ସମ୍ପନ୍ନ ହୋଇଅଛି ।

“ଟଗରୁଆ କରି ଉଷ୍ଣତ କରୁ ‘ଭ ମାରୁତେ କମ୍ପଦ ଯଥା
ରସ ତ୍ୟାଗ କରେ କ୍ଷୋଭ-ଆଘାତରେ ସତୀ ଦଶା ହେଲା ତଥା ।”
(ନବମସର୍ଗ)

ଚନ୍ଦନବୃକ୍ଷର ମହତ୍ତ୍ୱ ଖର୍ଜୁର ତରୁରେ ଆଶା କରିବା ଧୃଷ୍ଟତା । ଏ କ୍ଷେତ୍ରରେ ସୀତାଙ୍କ ମହତ୍ତ୍ୱ ପ୍ରତିପାଦନ କରିବା କବିର ଅଭିପ୍ରାୟ ନୁହେଁ । ବରଂ ତାତ୍କାଳୀନ ପରିସ୍ଥିତିରେ ସୀତାଙ୍କ ମାନସିକ ଅବସ୍ଥାର ସୂକ୍ଷ୍ମତମ ପରିବେଷଣ କରିବା ହିଁ କବି-ଚେତନାର ଅଭୀଷ୍ଟ ବସ୍ତୁ । ଆପାତତଃ ସୀତାଙ୍କ ନିମିତ୍ତ ଏକ ଖର୍ଜୁର ଗଛର ଉପମାନ କଳ୍ପନା କରିବା ସ୍ଥୂଳ ଦୃଷ୍ଟି ସମ୍ପନ୍ନ ବୋଲି କୁହାଯାଇପାରେ । କିନ୍ତୁ, ଉପମାନଟି ଗଭୀର ଅର୍ଥଶକ୍ତିରେ ପ୍ରୋଜ୍ଜ୍ୱଳ । ବିନା ଦୋଷରେ ସୀତା ରାମଚନ୍ଦ୍ରଙ୍କ କର୍ତ୍ତୃକ ଦଣ୍ଡିତ । ଏ ଦୃଷ୍ଟିରୁ, ସୀତାଙ୍କ ମନରେ ଦାରୁଣ କ୍ଷୋଭ ସୃଷ୍ଟି ହୋଇଛି । ଏବଂ ସେହି କ୍ଷୋଭର ପରିଣତି ହୋଇଛି ନୀରବ ଅଶ୍ରୁପାତ । ଅନୁରୂପ ଅବସ୍ଥା ଗୋଟିଏ ଖର୍ଜୁର ଗଛର । ଖର୍ଜୁରିଆର ଆଘାତରେ କ୍ଷୁବ୍ଧ ହେଲେ ମଧ୍ୟ ନୀରବ ଭାବରେ ରସତ୍ୟାଗ କରିବା ହିଁ ସେହି ବୃକ୍ଷ-ଜୀବନର ଅଶ୍ରୁଳ ପରିଣତି । ସେହେତୁ କବିଙ୍କ ବହୁ ସଫଳ ଚିତ୍ରକଳ୍ପ ମଧ୍ୟରୁ ଉପର୍ଯ୍ୟୁକ୍ତ ଚିତ୍ରକଳ୍ପଟି ନିଶ୍ଚିତ ଭାବରେ ଏକ ସଫଳ ସୃଷ୍ଟି । ଚନ୍ଦନବୃକ୍ଷର ସୁବାସ ଏବଂ ମହତ୍ତ୍ୱ ଲାଭ କରିଥିବା ସୀତା ଅନ୍ୟ ଏକ କବିର କଳ୍ପନାରେ ଉତ୍ତର ଜୀବନରେ ଖର୍ଜୁର ଗଛର ନୀରବ ରସତ୍ୟାଗ ଅବସ୍ଥା ଲାଭ କରିଛନ୍ତି । ସୀତା-ଜୀବନର ବିବର୍ତ୍ତନ ଏ କ୍ଷେତ୍ରରେ ମଧ୍ୟ ଉପର୍ଯ୍ୟୁକ୍ତ ଚିତ୍ରକଳ୍ପର ପରିବେଷଣ ମଧ୍ୟରେ ସଫଳ ଭାବରେ ସ୍ଫୁଟିତ ।

ସୀତାଙ୍କ ମନୋହର ଗତିର ବର୍ଣ୍ଣନା କରିବାକୁ ଯାଇ ଉପେନ୍ଦ୍ରଭଞ୍ଜ ଏକ ମନୋଜ୍ଞ ରୂପକଳ୍ପ ପ୍ରଦାନ କରିଛନ୍ତି ।

"ଉତ୍ତମ୍ଭ ନୂତନ ମଞ୍ଜରୀ ଢଳିତ ଯେ ପବନେ
ଉଡ୍ଡମ୍ଭଣ ଅନ୍ୟ ଦୃଷ୍ଟି ଯେ ଟଳଟଳ ଗମନେ" (୩।୨୭)

ଏହା ଏକ ଚଳମାନ ସୂକ୍ଷ୍ମ-ସୌନ୍ଦର୍ଯ୍ୟପୂର୍ଣ୍ଣ ଚିତ୍ରକଳ୍ପ । ଶୈଶବାବସ୍ଥାରେ ସୀତାଙ୍କ 'ଟଳଟଳ' ଗତିକୁ ପବନରେ ଆନ୍ଦୋଳିତ ଏକ ନୂତନ ମଞ୍ଜରୀର ସାମ୍ୟ-କଳ୍ପନା ଯଥାର୍ଥରେ ଅତ୍ୟନ୍ତ ହୃଦ୍ୟ ତଥା କବିତ୍ୱପୂର୍ଣ୍ଣ । ଏତଦ୍‌ବ୍ୟତୀତ, କବି ଉପେନ୍ଦ୍ରଭଞ୍ଜ ସୀତାଙ୍କ ଗତିକୁ ପାରଂପରିକ ଭାବରେ ହସ୍ତୀ ଓ ହଂସ ସହିତ ମଧ୍ୟ ତୁଳନା କରିଛନ୍ତି (୩।୪୩) । ରାଜହଂସୀ ଅଥବା ଗର୍ଭାଳସୀ ହଂସୀର ଉପମାନ ସୀତାଙ୍କ ଗତି

ନିମିତ୍ତ କବି ଉପେନ୍ଦ୍ର ଭଞ୍ଜ ବହୁବାର ଦେଇଯାଇଥିଲେ ମଧ୍ୟ ଗଙ୍ଗାଧର ସୀତାଙ୍କ ଗତିର ତାଦୃଶ ବର୍ଣ୍ଣନା ଦେଇନାହାନ୍ତି । ବରଂ ଉପମାନ ରାଜହଂସୀ ଭିନ୍ନ ଭାବରେ ସୀତାଙ୍କ ସକ୍ଷମ ତୁଳନୀୟ ହୋଇଅଛି ।

"ତନୁଭାର-ଜାତ-ମୃଦୁତ ସ୍ଫୀତ ପଦ୍ମା ଚଳେ
ଜଳ ରାଜହଂସୀ କୂଜଇ କବା ଆରତ ସ୍ୱନେ" (୨ୟ ସର୍ଗ)

ଗତି ପାଇଁ ରାଜହଂସ କବି-କଳ୍ପନାରେ ଏକ ସ୍ୱୀକୃତ ଉପମାନ ଆଦର୍ଶ ହେଲେ ମଧ୍ୟ ଗଙ୍ଗାଧରଙ୍କ ଉପର୍ଯ୍ୟୁକ୍ତ ପରିକଳ୍ପନା ଯେପରି ମୌଳିକ ସେପରି ମଧ୍ୟ ଚମତ୍କାର । ମୁନିକୁମାରୀଙ୍କ ଗହଣରେ ବୈଦୂର୍ଯ୍ୟମାଳା ସୀତା । ପୁଣି, ତାହାଙ୍କ ଦୁଃଖରେ ମୁନିକୁମାରୀଗଣ ସମବେଦନାପରାୟଣା ଏବଂ ଅଶ୍ରୁପ୍ଲାବିତା । ସୀତାଙ୍କ ଆର୍ତ୍ତସ୍ୱରର କାରୁଣ୍ୟ ତାହାଙ୍କର କ୍ରନ୍ଦନ ମଧ୍ୟରେ ପରିବେଶକୁ ବେଦନାକ୍ତ କରିଦେଇଅଛି । ସେ ପରିବେଶ ପୁଣି ଅଧିକ ଅଶ୍ରୁଳ ହୋଇଉଠୁଛି ମୁନିକୁମାରୀଙ୍କ ଅଶ୍ରୁପାତରେ । ସୀତାଙ୍କ ଜୀବନର ବିବର୍ତ୍ତନ ହଂସ ଉପମାନ ମାଧ୍ୟମରେ ଉଭୟ କବିଙ୍କ ଦ୍ୱାରା ଉପର୍ଯ୍ୟୁକ୍ତ ଭାବରେ ନିର୍ଦ୍ଦିଷ୍ଟ ହୋଇଛି । ଉପେନ୍ଦ୍ର ଭଞ୍ଜ ରାଜହଂସ ବା ଗର୍ଭାଳସୀ ହଂସୀର ଉପମାନ ପ୍ରୟୋଗ କରିଛନ୍ତି ପାରଂପରିକ ଭାବରେ । କିନ୍ତୁ, କବି ଗଙ୍ଗାଧର ସୀତାଙ୍କ ତାତ୍କାଳିକ ଅବସ୍ଥାର ମନୋଜ୍ଞ ଅଭିବ୍ୟକ୍ତି ସେହି ରାଜହଂସୀ ଉପମାନକୁ ଗ୍ରହଣ କରି ଅଧିକ ଚମତ୍କାର କରିପାରିଛନ୍ତି ।

'ବୈଦେହୀଶ ବିଳାସ' ଓ 'ତପସ୍ୱିନୀ' ଉଭୟ କାବ୍ୟ ମଧ୍ୟରେ କେତେକ ତୁଳ୍ୟ ଉପମାନ ତଥା ଉପମେୟର ପ୍ରୟୋଗ ବୈଚିତ୍ର୍ୟ ଉପର୍ଯ୍ୟୁକ୍ତ ପର୍ଯ୍ୟାୟ ଗୁଡ଼ିକରେ ଅନୁଶୀଳନ କରାଗଲା । ସମ୍ପ୍ରତି ପୃଥକ ଭାବେ ସୀତାଙ୍କ ନିମିତ୍ତ କବି ଉପେନ୍ଦ୍ର ଭଞ୍ଜ ଏବଂ କବି ଗଙ୍ଗାଧର ମେହେର ଯେଉଁ କେତେଗୋଟି ମନୋଜ୍ଞ ଚିତ୍ରକଳ୍ପ ସୃଷ୍ଟି କରିଛନ୍ତି, ତାହାର ବିଚାର କରାଯାଉଅଛି ।

'ବୈଦେହୀଶ ବିଳାସ' କାବ୍ୟରେ ସୀତାଙ୍କ ରୂପ ସୌନ୍ଦର୍ଯ୍ୟ ଉପସ୍ଥାପନ କରିବା ଲକ୍ଷ୍ୟରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ନିମ୍ନଲିଖିତ କେତେଗୋଟି ଚିତ୍ରକଳ୍ପ ସୃଷ୍ଟି କରିଛନ୍ତି ।

୧) “ବଶୋକ ଚନ୍ଦ୍ରେ ଶେଫାଳୀ ସାଧି । ଚଳନସ୍ଥାନ ହ୍ରଦ କଣ୍ଠି ।
ବାହୁଡେ ଶଇଧା ଶଲ୍ଲଧାରେ ଜଳରେ ସର୍ଜି ଅବା ରମଣପ୍ରେମ ମଧୁ
ସେ ବୈଦେହୀ । ” (୩୬।୩୬)

୨) “କନ୍ଦ ଏ ମୃଗମଦରେ ଯେ
କଟେ କେ ଚନ୍ଦ୍ରେ ମଧୁମକ୍ଷିକା ଏ ସ୍ତବକ ସଙ୍ଗ ଭଙ୍ଗରେ ଯେ ।”
(୧୦।୧୧)

୩) “କଲ୍ପତରୁ ଚନ୍ଦ୍ରକେ ପ୍ରସୂନ ଜାଣି କେତ୍ର ସୁମରେ କେ କୁସୁମରେ
କଣଙ୍କେ ଯାଇଁ ଭ୍ରମରେ ଶ୍ୱାସବଶେ ପାଛୋ ନବନୀ ଭ୍ରମରେ ”
(୧୧।୧୫)

୪) “ବିଭୂଷିତ କରନ୍ତି ଶିରେ ଶିଳ୍ପକାଷ୍ଠ,
ବଚଧରେ ଉତ୍ପ୍ରେକ୍ଷାକୁ ଜାତ କର
ଚମକନ ମାନୋପୂକ ତକେ ଜଳ,
ବପୃଷ୍ଠ କ ପଡ଼ବାରେ ଉଦ୍ଧତକ । ” (୧୩।୪୮)

୫) “ବଧିରେ ପ୍ରଜାପତି-ନପ୍ତା ଅର୍ଥୀ ।
ବ୍ୟାକୁଳ କଳବର୍ଦ୍ଧ ଯୋଗ ଛଥି ।
କକେ ଦରଷ ପ୍ରଜାଙ୍କୁ ଘଉଡ଼ି ।
ବୁଝିବାକୁ ପ୍ରେମବଶିକ ନେଉ ।
କଳ ଥିଲେ ଭୂମ୍ୟେ । କଂଛଦ ଶିରକୁ ହନ୍ତ ଆଇସ୍ୱେ । (୩୧।୧୧)

୬) “କଠିଣ ଚୂର୍ଣ୍ଣ କୁନ୍ତଳ । ବଳ ଥିବ ଅର୍ଦ୍ଧ ସ୍ଥଳ
କକ୍ଷୋରୁ ଦେ ମୁଖମେକ କରିଥିବ ଏ ଦୃଷ୍ଟିକୃତ ସଫଳ ।
କସ୍ୱବସ୍ତ୍ର ଅବଶେଷେ । ବଧୂଲୁବ୍ଧ ଅଳ୍ପ ଗ୍ରାସେ
ବାରୁଣୀ ଅଚଳଚୂଳେ ପୂର୍ଣ୍ଣଶଶୀ ପ୍ରସ୍ଥାନ ଯଥା ଦଶେ
(୩୩।୧୧-୧୨)

୭) “ବଡ଼ି ଅଳକା ସ୍ଥଳ ଅର୍ଦ୍ଧଗ୍ରାସିକା ଏ ଲକ୍ଷ୍ୟରେ ଚଉ ରସ ଯେ
ଚରୁପାକ ଅଭ ଜାତ ରୁପ ଫଳ କଳଙ୍କି ଆସିଲ ଚବ ଯେ”
(୩୩।୪୭)

ଉପର୍ଯ୍ୟୁକ୍ତ ପ୍ରତ୍ୟେକ ଚିତ୍ରକଳ୍ପ ଶବ୍ଦସୂଚୀସ୍ଥ ସ୍ୱଳ୍ପପର୍ଯ୍ୟୋକ୍ତ ସହାସ୍ୱଭାବରେ ଅଭିବ୍ୟକ୍ତ ହୋଇଥିଲେ ମଧ୍ୟ କବି-କଳ୍ପନାର ସୂକ୍ଷ୍ମ-ସୌନ୍ଦର୍ଯ୍ୟ-ଚେତନାରେ ଶାଣିତ ହୋଇଥିବା ଲକ୍ଷ୍ୟ କରାଯାଇଅଛି ।

ପ୍ରଥମ ଚିତ୍ରକଳ୍ପଟି ମଧ୍ୟରେ ସୁନ୍ଦରୀ ସୀତାଙ୍କ ବକ୍ଷର ରୋମାଳୀକୁ ଶୈବାଳାନ୍ତର ଉପମାନ ପ୍ରଦାନ ପୂର୍ବକ କବି ସୀତାଙ୍କ ହୃଦ-ଦେଶକୁ ବିଜନ ସ୍ଥାନ ମନେ କରି ଶରଘା ଶ୍ରଦ୍ଧାବଶତଃ ରାମ ପ୍ରେମ ରୂପକ ମଧୁଚକ୍ର ସେ ପ୍ରକାରେ ସୃଷ୍ଟି କରି ଯାଇଅଛି ବୋଲି କବି ଉପେନ୍ଦ୍ର କଳ୍ପନା କରୁଛନ୍ତି । ଦ୍ୱିତୀୟ ଓ ତୃତୀୟ ଚିତ୍ରକଳ୍ପ ମଧ୍ୟରେ ମଧୁମକ୍ଷିକା ଓ ଭ୍ରମର ଉପମେୟ ଭାବରେ ଗୃହୀତ । ଏ ଦୁଇଟି ଉପମେୟ ଗତାନୁଗତିକ ହେଲେ ମଧ୍ୟ ଉକ୍ତ ପ୍ରକାରେ ତାହାର ବର୍ଣ୍ଣନା ଚଳମାନ ସୌନ୍ଦର୍ଯ୍ୟରେ ରସାଣିତ ହୋଇଅଛି । ସୀତାଙ୍କ ବର୍ତ୍ତୁଳ ଚିବୁକରେ କସ୍ତୁରୀ ବିନ୍ଦୁର ମନୋହାରିତାକୁ ବର୍ଣ୍ଣନା କରିବା ନିମିତ୍ତ କବି ଉତ୍ପ୍ରେକ୍ଷା କରୁଛନ୍ତି—ସତେ ଯେପରି ତିଳ କୁସୁମରୁ (ନାସା) ମଧୁ ଆହରଣ କରିବା ପାଇଁ ଯାଇ ଭ୍ରମ ବଶତଃ ଭ୍ରମର ଶୁଣ୍ଡାଘାତରେ ସେଠାରେ କ୍ଷଣେ ରହିଯାଇଅଛି । ଅନୁରୂପ ଭାବରେ ମଧ୍ୟ ଏକ ମଧୁମକ୍ଷିକାର ଚିତ୍ରକଳ୍ପ କବି ଉକ୍ତ ଉପମେୟ ପାଇଁ ପ୍ରଦାନ କରିଛନ୍ତି । ଚତୁର୍ଥ ଦୃଷ୍ଟାନ୍ତଟି ମଧ୍ୟରେ ଉପମେୟ—ସୀତାଙ୍କ କେଶ ପାଶରେ ଶୋଭିତ ମସ୍ତକମଣି । ଏହାର ଉପମାନ ପାଇଁ ମଧ୍ୟ କବି ଏକ ସୂକ୍ଷ୍ମ-ସୌନ୍ଦର୍ଯ୍ୟ ଚେତନା ଅଭିବ୍ୟକ୍ତ କରିଛନ୍ତି । ଫଳପତ୍ର ଉପରେ ଢଳଢଳ କରୁଥିବା ଜଳକଣାର ମନୋହାରିତା ଏ ପ୍ରକାରେ ବ୍ୟଞ୍ଜିତ ହୋଇଛି ସଫଳ ଭାବରେ ।

ଉପେନ୍ଦ୍ର ଭଞ୍ଜଙ୍କ ବିରୁଦ୍ଧରେ ଯେଉଁ ସାହିତ୍ୟିକ ସମାଲୋଚନା ସାଧାରଣତଃ ପ୍ରକାଶିତ ହୁଏ ତନ୍ମଧ୍ୟରେ ତାହାଙ୍କର ସାଧାରଣ ଦୈନନ୍ଦିନ ଜୀବନ ପ୍ରତି ଉଦାସୀନତା ପ୍ରଦର୍ଶନ ଏକ କାରଣ । କିନ୍ତୁ, ପଞ୍ଚମ ଦୃଷ୍ଟାନ୍ତଟି ମଧ୍ୟରେ କବି ଉପେନ୍ଦ୍ର ଭଞ୍ଜ ଏକ ସାଧାରଣ କୃଷକର ଚିତ୍ର ଦେଇଛନ୍ତି । ବଳଶାଳୀ ଦମ୍ଭ ରାଜା ଦୁର୍ବଳ ସାଧାରଣ ପ୍ରଜାକୁ ତାହାର ଭୂସମ୍ପତ୍ତିରୁ ବିତାଡ଼ିତ କରି ନିଜେ ତା'ର କ୍ଷେତରେ ହଳକରି ଯେପରି ଅଙ୍କୁଅଳ କରନ୍ତି; ତଦନୁରୂପ ରାବଣ ବଳାତ୍କାରରେ ସୀତାଙ୍କୁ

ଅପହରଣ କରିନେଇ ତାହାଙ୍କ ହୃଦ-ବେଦୀରେ ପ୍ରେମ-ବୀଜ ବପନ କରିବାକୁ ଚାହିଁଛନ୍ତି। ବ୍ୟାକୁଳ ଚିତ୍ତରେ ରାମଚନ୍ଦ୍ର ବନ ମଧ୍ୟରେ ସୀତାଙ୍କୁ ଅନ୍ୱେଷଣ କରିବା ସମୟରେ କୁକ୍କୁଟ ପରାମର୍ଶ ଦେଉଛନ୍ତି - ଶକ୍ତି ଥିଲେ ରାବଣର ଶିର ଛେଦନକରି ସୀତାଙ୍କୁ ଉଦ୍ଧାର କରିବା ଲାଗି। ବଳଶାଳୀ ଅତ୍ୟାଚାରୀ ରାଜା ଏବଂ ଦରିଦ୍ର, ଅସହାୟ କୁକ୍କୁଟର ଏ ଚିତ୍ର ଯଥାର୍ଥରେ ଉଚ୍ଚସାହିତ୍ୟରେ ଅଭିନବ ମହତ୍ତ୍ୱ ଲାଭ କରିଅଛି।

ଗ୍ରହ-ନକ୍ଷତ୍ର ରାଜ୍ୟରୁ ସଂଗୃହୀତ ଏକ ପାରଂପରିକ ଉପମାନ ଉପର୍ଯ୍ୟୁକ୍ତ ଷଷ୍ଠ ଦୃଷ୍ଟାନ୍ତଟି ମଧ୍ୟରେ ସୂକ୍ଷ୍ମ-ସୌନ୍ଦର୍ଯ୍ୟ-ଚେତନାରେ ଖଚିତ ହୋଇଥିବା ଲକ୍ଷ୍ୟ କରାଯାଏ। ବୃକ୍ଷମାନଙ୍କୁ ରାମଚନ୍ଦ୍ର ସୀତାଙ୍କ ପରିଚୟ ନିମିତ୍ତ କେତେକ ତଥ୍ୟ ପରିବେଷଣ କରୁଛନ୍ତି। ଏ ତଥ୍ୟ ପରିବେଷଣ ବାର୍ତ୍ତାଧର୍ମୀ ନ ହୋଇ ସୌନ୍ଦର୍ଯ୍ୟପୂର୍ଣ୍ଣ ହୋଇପାରିଛି ଉକ୍ତ ଦୃଷ୍ଟାନ୍ତଟି ମଧ୍ୟରେ। ସୀତାଙ୍କ ଚୂର୍ଣ୍ଣକୁନ୍ତଳ କପାଳର ଅର୍ଦ୍ଧଭାଗକୁ ଢଳିପଡ଼ିଥିବ ଏବଂ ଚିନ୍ତାବଶତଃ ସେ ନମ୍ରମୁଖୀ ହୋଇ ବସିଥିବେ। ଯେପରି ରାତ୍ରି ଶେଷରେ ରାହୁ ଅଳ୍ପ ଗ୍ରାସ କରିଥିଲେ ପୂର୍ଣ୍ଣଚନ୍ଦ୍ର ପ୍ରଭାହୀନ ହୋଇ ଅସ୍ତଗିରି ଶିଖରରେ ଦେଖାଯାଏ। ସୀତାଙ୍କ ମୁଖ-ମଣ୍ଡଳ ସେପରି ଦେଖାଯାଉଥିବ। ରାହୁଗ୍ରସ୍ତ ଚନ୍ଦ୍ରର ଉପମାନ ପାରଂପରିକ ହେଲେ ମଧ୍ୟ ରାତ୍ରିଶେଷରେ ଅସ୍ତଗିରି ଶିଖରରେ ଏ ଦୃଶ୍ୟ-କଳ୍ପନା ଯଥାର୍ଥରେ ମନୋଜ୍ଞ।

ପ୍ରୋକ୍ତ ଉପମେୟ ନିମିତ୍ତ ଅନ୍ୟ ଏକ ଚମତ୍କାର ଉପମାନ ମଧ୍ୟ ପ୍ରଦାନ କରାଯାଇଅଛି ସପ୍ତମ ଦୃଷ୍ଟାନ୍ତଟି ମଧ୍ୟରେ। ସୀତାଙ୍କ ଚୂର୍ଣ୍ଣକୁନ୍ତଳ ଭାଳଦେଶରେ ଅର୍ଦ୍ଧଭାଗକୁ ଅତିକ୍ରମ କରି ବେଢ଼ି ରହିଛି। କନ୍ଦର୍ପ ଫାଶରେ କଳଙ୍କ ଲାଗି ଅଛିଲା ପରି ସେ ଦୃଶ୍ୟକୁ କବି ବର୍ଣ୍ଣନା କରୁଛନ୍ତି। ତାତ୍କାଳିକ ଅବସ୍ଥାରେ ସୀତାଙ୍କ ଅର୍ଦ୍ଧଚେତନ ବେଶ ପରିପାଟୀ ମଧ୍ୟରେ ଯେଉଁ ସୌନ୍ଦର୍ଯ୍ୟ ସଗୁପ୍ତ ରହିଛି, ତାହାକୁ ଉପର୍ଯ୍ୟୁକ୍ତ ଉଭୟ ଦୃଷ୍ଟାନ୍ତ ମଧ୍ୟରେ ସଫଳ ଭାବରେ ପରିବେଷଣ କରାଯାଇଅଛି। ସୌନ୍ଦର୍ଯ୍ୟ-ପୂର୍ଣ୍ଣ ମୁଖମଣ୍ଡଳ ଚିନ୍ତାଜନିତ ମଳିନତା ଏବଂ ଅସତର୍କ ଭାବରେ ବେଢ଼ି ରହିଥିବା ଚୂର୍ଣ୍ଣ କୁନ୍ତଳର ସୌନ୍ଦର୍ଯ୍ୟ ଅଭିବ୍ୟକ୍ତ କରିବା ନିମିତ୍ତ ରାହୁଗ୍ରସ୍ତ ଚନ୍ଦ୍ରମଣ୍ଡଳ ଏବଂ କନ୍ଦର୍ପ ଫାଶର କଳଙ୍କ ଚିତ୍ର ଉପସ୍ଥାପନ କରାଯାଇଅଛି।

ତାତ୍କାଳିକ ଅବସ୍ଥାରେ ସୀତାଙ୍କ ଜୀବନ-ଚର୍ଯ୍ୟାରେ କନ୍ଦର୍ପର ଭୂମିକା ଗୁରୁତ୍ୱହୀନ । ଅତଏବ, ତା'ର ଫଳରେ ହେଲେ ଯେପରି ଜନଙ୍କ ଲାଗି ଅସ୍ପୃଷ୍ଟ । ଏ ଉପମାନର ବ୍ୟଞ୍ଜନା ଯଥାର୍ଥରେ ଖୁବ୍ ଅର୍ଥଶକ୍ତିରେ ଚମତ୍କାରିତାପୂର୍ଣ୍ଣ ।

ଉପର୍ଯ୍ୟୁକ୍ତ କେତେଗୋଟି ଚିତ୍ରକଳ୍ପ ବ୍ୟତୀତ ଉପେନ୍ଦ୍ର ଭଞ୍ଜ କାବ୍ୟ-ନାୟିକା ସୀତାଙ୍କ ନିମିତ୍ତ ଅନ୍ୟ ବହୁ ଚିତ୍ରକଳ୍ପ ମଧ୍ୟ ସୃଷ୍ଟି କରିପାରିଛନ୍ତି । ପ୍ରତ୍ୟେକ ଚିତ୍ରକଳ୍ପ ମଧ୍ୟରେ ସୀତାଙ୍କ ରୂପ, ସୌନ୍ଦର୍ଯ୍ୟକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ହିଁ ପ୍ରତିପାଦନ କରାଯାଇଅଛି । କାବ୍ୟର ପ୍ରତିପାଦ୍ୟ ଦୃଷ୍ଟିରୁ ଏବଂ କାବ୍ୟରେ ଅଙ୍ଗୀରସର ମହତ୍ତ୍ୱ ପ୍ରତିଷ୍ଠା ଦୃଷ୍ଟିରୁ ସୀତାଙ୍କ ରୂପ ଓ ସୌନ୍ଦର୍ଯ୍ୟର ବର୍ଣ୍ଣନା ସ୍ରଷ୍ଟାମାନସର ଧ୍ୟେୟ ହୋଇ ଉଠିବା ସ୍ୱାଭାବିକ । ବିରହାବସ୍ଥାରେ ମଧ୍ୟ ସୀତାଙ୍କ ରୂପ ବର୍ଣ୍ଣନା ମଧ୍ୟରେ ପରୋକ୍ଷଭାବରେ ତାହାଙ୍କର ସୃଷ୍ଟ ସୌନ୍ଦର୍ଯ୍ୟକୁ ହିଁ ପ୍ରତିପାଦନ କରାଯାଇଅଛି । କାବ୍ୟ-ନାୟିକା ସୀତାଙ୍କ ପୂର୍ବାର୍ଦ୍ଧ ଜୀବନ ଚିତ୍ରର ସଫଳ ପରିବେଷଣ ତାଦୃଶ ବହୁ ଚିତ୍ରକଳ୍ପ ମାଧ୍ୟମରେ ସାର୍ଥକ ଭାବରେ ଚିତ୍ରଣ କରାଯାଇ ପାରିଛି ।

ପଶ୍ଚାତ୍ତରେ, କବିମେହେର ସୀତାଙ୍କ ଉତ୍ତର ଜୀବନକୁ 'ତପସ୍ୱିନୀ' କାବ୍ୟ ମଧ୍ୟରେ, କାବ୍ୟର ଉପାଦାନ ଦୃଷ୍ଟିରୁ ଗ୍ରହଣ କରିଛନ୍ତି । ଦୁଃଖ ଓ ଅଶ୍ରୁ ମଧ୍ୟରେ, ତ୍ୟାଗ ଓ ତିତିକ୍ଷା ମଧ୍ୟରେ, ଆଦର୍ଶ ଓ ମହତ୍ତ୍ୱ ମଧ୍ୟରେ ସୀତାଙ୍କ ଉତ୍ତର ଜୀବନ ମହାଲକ୍ଷଣୀୟ ନାରୀ ପରମ୍ପରାରେ ତାଙ୍କ ଆସନ ଲାଭ କରିଛି । ପୂର୍ବାଲୋଚିତ କେତେଗୋଟି ଚିତ୍ରକଳ୍ପ ବ୍ୟତୀତ ଅନ୍ୟ ଯେଉଁ କେତେଗୋଟି ଚିତ୍ରକଳ୍ପ ମଧ୍ୟରେ କବି ମେହେର ସୀତାଙ୍କ ଚରିତ୍ରର ମହତ୍ତ୍ୱକୁ ସୃଷ୍ଟ-ସୌନ୍ଦର୍ଯ୍ୟ ମାଧ୍ୟମରେ ପରିବେଷଣ କରିଛନ୍ତି, ତାହାର ସଂକ୍ଷିପ୍ତ ବିଶ୍ଳେଷଣ କରାଯାଉଅଛି ।

୧) 'ବର୍ଷାର ମହାନଦୀର ଘୋଳ ଆବିଳ ଜଳ
ସ୍ୱଚ୍ଛ କରିବାକୁ କି ରୂପେ ହେବ ନିର୍ମଳୀ ଫଳ ।

ରଜ, ଅଙ୍ଗ, ତୈଳ ସଙ୍ଗତେ ସ୍ୱଚ୍ଛ ନଦୀ ଯେସନ
କୁମାରୀକ ପାଇ ବଢ଼ିଲା ସୀତା ଶୋକ ତେସନ''। (୨ୟ ସର୍ଗ)

୨) "ସ୍ୱୋତସ୍ୱିନୀ ଗତି ସହଜ ଧାଏ ସାଗର ଆଶେ
ଲଙ୍ଘେ ଶିଳା, ଶୈଳ, ସଙ୍କଟ ଯେତେ ବିରୁଦ୍ଧେ ଆସେ ।

ବାରିଧି ସଙ୍ଗମେ ତୀର୍ଥରେ ସବୁ ଭଗତ ଶେଷ
ଉଭୟ ଜୀବନେ ନ ରହେ ଆଉ ପ୍ରଭେଦ ଲେଶ ।

ଝଡ଼ିବଣେ ଉଠି ମଧ୍ୟରେ ଯେବେ ଉର୍ଦ୍ଧ୍ୱକୁ ଭେଦ
ବାଲିସ୍ତୂପ ଜୟ ସରିତ ସିନ୍ଧୁ ହୃଦୟ ଛେଦ ।

ସରିତ ମରିତ ନ ପାରେ ତା'ର ଜୀବନ ଧାର
ହୃଦୟ ପ୍ରବାହ ରହଇ ହୋଇ ଚନ୍ଦ୍ର ଆକାର । (୩ୟ ସର୍ଗ)

୩) "ପଦ୍ମା-ହ୍ରଦ-ଶିଶିର-ବିନ୍ଦୁରେ ଖର ରଶ୍ମିର ପ୍ରତିବିମ୍ବ ପଡ଼ି
ଶୀର୍ଣ ଶମ ମୁକୁତ,
ଶୋକ-ଜର୍ଜରିତ-ଚିତ୍ତ-ପଟଳକେ କରି ଦୀପିତ ହେଲେ ଆସନ୍ନ
ଉତ୍‌ଥିତ ଜାନକୀ ସତୀ,
ଦମି ଅନୁକମ୍ପା ପଥୁରେ, ବଢ଼ାଇଲ ଉଷାର ଦେ ସଭକସ୍ୱରେ ।
(୪ର୍ଥ ସର୍ଗ)

୪) "ଗୁରୁ-ଗରଭ-ଭରେ ଆଳସୀ ସୀତା
ତାପସୀ ପରବେଶେ ହୋଇ ବେଷ୍ଟିତା ।

× × ×

ପରିଧି ଯୁତ କି ସେ ଚନ୍ଦ୍ରମଣ୍ଡଳ
ସ୍ୱଳା ବଦାପ୍ୟେ ଭଜେ ଅସ୍ତ ଅଚଳ

ଲଜ୍ଜା ପାଣ୍ଡୁର ଗଣ୍ଡ ସ୍ୱେଦ-ପଟଳ
ଶିଶିର ପରି ହିମ ନୟନ-ଜଳ ।" (୮ମ ସର୍ଗ)

୫) "ଅଶ୍ୱିନୀକୁମାରେ ଗୁମ୍ଫା ସଙ୍କାଶର
କୁମାର ଯୁଗଳ କର ପଦ୍ମେ ଧରି ।

ସତୀ ଅନୁକମ୍ପା ଆସିଲେ ମଣ୍ଡପେ
ଶୋଭା ଚହଁ ଉଭା ହୋଇଗଲା ଦର୍ପେ ।

କୃଷ୍ଣା ତ୍ରୟୋଦଶୀ ସୁଧାକର ପାଶେ
ପ୍ରଭାଶ ତାରକା ଉଦିତ ଆକାଶେ ।

ପ୍ରତିବିମ୍ବ ତାଙ୍କ ସରୋବର ଗର୍ଭେ
ବେନି ପ୍ରାଚୀ ଯେହ୍ନେ ରହିଅଛି ଗର୍ବେ ।

× × ×

କଭୁ ଉଷା ତନୁ ନଶ୍ୱାନ କରଣ
ଉଷା ପାଶେ ଯଥା କମଳିନୀ ବନ ।" (୯ମ ସର୍ଗ)

୬) "ଦିଶୁଥିଲେ ସ୍ୱଚ୍ଛ-ରତନେ ସୁନ୍ଦର
ଯଥା ରତ୍ନ-ସାନୁ ଶୋଭିତ କନ୍ଦର ।" (୯ମ ସର୍ଗ)

ସ୍ୱାମୀ ପରିତ୍ୟକ୍ତା ସତୀ ଗର୍ଭବତୀ ସୀତାଙ୍କ ଶୋକାଶ୍ରୁକୁ ମହାନଦୀର ବର୍ଷାକାଳୀନ ଗାଢ଼ ଆବିଳ ଜଳ ସହିତ ତୁଳନା କରାଯାଇଅଛି । ସୀତାଙ୍କ କ୍ରନ୍ଦନ ଧ୍ୱନିକୁ ଅନୁସରଣ କରି ବାଲ୍ମୀକି ଆଶ୍ରମର ଯେଉଁ ମୁନିକୁମାରୀ ଗଣ ସୀତାଙ୍କ ନିକଟରେ ପହଞ୍ଚିଛନ୍ତି, ଏବଂ 'ଅପୂର୍ବନାରୀ'ଟିର ବିଗଳିତଅଶ୍ରୁ ସହିତ ସମବେଦନା ପରିପୂର୍ଣ୍ଣ ହୋଇ ସେମାନେ ମଧ୍ୟ ଅଶ୍ରୁ ବିସର୍ଜ୍ଜନ କରିଛନ୍ତି । ସମବେଦନା ପରିପୂର୍ଣ୍ଣ ଏହି ମୁନିକୁମାରୀମାନଙ୍କୁ ସୀତା ନିକଟରେ ପାଇଲା ପରେ ତାହାଙ୍କର ଶୋକ ପ୍ରଶମିତ ନ ହୋଇ ବରଂ ଉଦ୍ବେଳିତ ହୋଇଅଛି । ସାଧାରଣତଃ ତାହା ହିଁ ହୋଇଥାଏ । ଅତଏବ, ମେହେର କବିଙ୍କ କଳ୍ପନାରେ ମୁନିକୁମାରୀ ହୋଇଛନ୍ତି ଇବ, ଅଙ୍ଗ ଓ ତେଲ ନଦୀ ଭଳି କେତେଗୋଟି ଉପନଦୀ । ଏହି ସବୁ ଉପନଦୀର ଜଳକୁ ଗ୍ରହଣ କରି ବର୍ଷାକାଳୀନ ମହାନଦୀର ଜଳସ୍ରୋତ ବର୍ଦ୍ଧିତ ହେବା ଏକ ସ୍ୱାଭାବିକ ସତ୍ୟ । ସୀତାଙ୍କ ଶୋକର ଗଭୀରତା ଏବଂ ତତ୍କାଳୀନ ଅବସ୍ଥାରେ ସେହି ଶୋକର ତୀବ୍ରତାର ସହ ଉପଯୁକ୍ତ ଭାବକଳ୍ପଟି ମଧ୍ୟରେ ଅଧିକ ଚମତ୍କାର ହୋଇ ପାରିଛି ।

ସୀତାଙ୍କ ଘଟଣା ବ୍ୟତୀତ ଅଥଚ ରାମର ଦୁଃଖପୂର୍ଣ୍ଣ ଉତ୍ତର-ଜୀବନ ପ୍ରବାହକୁ କବି ମେହେର ଏକ ସ୍ରୋତସ୍ୱତୀର ପ୍ରବାହ ସହିତ ତୁଳନା କରିଛନ୍ତି । ସାଗର ସଙ୍ଗମ ଲକ୍ଷ୍ୟରେ ପ୍ରବାହିତ ନଦୀ ବହୁ ଘାତ,

ସନ୍ତବାଚକୁ ଉଲଙ୍ଘନ କରି ଗଲାବେଳେ କୌଣସି କାରଣରୁ ଏକ ବାଲିସ୍ତୂପ ସାଗର ଓ ସରିତ ମଧ୍ୟରେ ବ୍ୟବଧାନ ସୃଷ୍ଟି କରିପାରେ। ସେ ସ୍ଥଳରେ ସରିତର ଅବସ୍ଥାକୁ ଉକ୍ତ ଚିତ୍ରକଳ୍ପଟି ମଧ୍ୟରେ ଗମ୍ଭୀର ବ୍ୟଞ୍ଜନା-ପୂର୍ଣ୍ଣ କରି ପ୍ରକାଶ କରାଯାଇଅଛି। ବାଲିସ୍ତୂପକୁ ଅତିକ୍ରମ କରି ନ ପାରି ସରିତ ଶେଷ ହୋଇଯାଏ ନାହିଁ, ବରଂ ନିଜକୁ ଅଧିକ ପ୍ରସାରିତ କରି ହ୍ରଦ ରୂପରେ ରହିଯାଏ। ସୀତାଙ୍କ ତାତ୍କାଳିକ ଅବସ୍ଥା ଠିକ୍ ସେହିପରି। ଲୋକାପବାଦ ରୂପକ ବାଲିସ୍ତୂପ ସୀତା ଓ ରାମଚନ୍ଦ୍ରଙ୍କ ମଧ୍ୟରେ ଯେଉଁ ବିଚ୍ଛେଦ-ପ୍ରାଚୀର ସୃଷ୍ଟି କରିଅଛି ତଦ୍ୱାରା ସୀତାଙ୍କ ହୃଦୟ ଦୁଃଖରେ ଭରପୂର ହୋଇଥିଲେ ମଧ୍ୟ ତାହା ଅଧିକ ପ୍ରସାରିତ ହୋଇଯାଇଛି। ସୁଖ ସ୍ପର୍ଶରେ ହୃଦୟ ଆହ୍ଲାଦିତ ହୁଏ, କିନ୍ତୁ, ଦୁଃଖରେ ତାହା ଅଧିକ ପ୍ରସାରିତ ହୋଇଥାଏ। ସୀତାଙ୍କ ଭଳି ଏକ ଆର୍ଯ୍ୟ ପରଂପରର ମହୀୟସୀ ନାରୀଙ୍କ ହୃଦୟ ଗମ୍ଭୀର ଦୁଃଖର ପ୍ରଭାବରେ ବରଂ ପ୍ରସାରିତ ହୋଇପାରିଛି। ସୀତାଙ୍କ ଉତ୍ତର-ଜୀବନର ମହତ୍ତ୍ୱକୁ ଏତାଦୃଶ ଏକ ଚିତ୍ରକଳ୍ପର ବ୍ୟଞ୍ଜନା ମଧ୍ୟରେ ଅଭିବ୍ୟକ୍ତ କରିବା କବି ମେହେରଙ୍କ ଶକ୍ତିଶାଳୀ ପ୍ରତିଭାର ପ୍ରମାଣ ପ୍ରଦାନ କରିଥାଏ।

ନାରୀର ବିଭିନ୍ନ ଅବସ୍ଥା ସହିତ ସାଦୃଶ୍ୟ କଳ୍ପନା କରିବାରେ ଭାରତୀୟ କାବ୍ୟମଧ୍ୟରେ 'ପଦ୍ମ' ଏକ ସଫଳ ଆଦର୍ଶ ଉପମାନ। ପୁଣି, ପଦ୍ମ ସହିତ ସୂର୍ଯ୍ୟଙ୍କ ଗଭୀର ଆତ୍ମିକ ସମ୍ପର୍କ ମଧ୍ୟ ସେହି ଉପମାନଗତ ଆଦର୍ଶ ମଧ୍ୟରେ ଗୃହୀତ। ରାମଚନ୍ଦ୍ର ସୂର୍ଯ୍ୟବଂଶୀ। ପଦ୍ମିନୀ ଜାତୀୟା ମହୀୟସୀ ନାରୀ ସୀତା ତାହାଙ୍କର ଆଦରଣୀୟା ପତ୍ନୀ। ଅସ୍ୱାଭାବିକ ପରିସ୍ଥିତିରେ ସୀତା ରାମଚନ୍ଦ୍ରଙ୍କ କର୍ତ୍ତୃକ ନିର୍ବାସିତା। ଏହାସତ୍ତ୍ୱେ, ସୀତାଙ୍କ ହୃଦୟରେ ଯେଉଁ ଆତ୍ମୀୟ ପୁରୁଷର ଭାବମୂର୍ତ୍ତିଟି ଚିର ବିଦ୍ୟମାନ, ତାହା ରାମଚନ୍ଦ୍ରଙ୍କର। ଉକ୍ତ ଭାବର ଅଭିବ୍ୟକ୍ତି ନିମିତ୍ତ କବି ମେହେର ଏକ ସାଙ୍କେତିକ ଉପମାନକୁ ଗ୍ରହଣ କରିଥିଲେ ମଧ୍ୟ ତାହା ଚିତ୍ରଧର୍ମିତା ଏବଂ ଭାବ-ବ୍ୟଞ୍ଜନା ଦୃଷ୍ଟିରୁ ଉପର୍ଯ୍ୟୁକ୍ତ ତୃତୀୟ ଦୃଷ୍ଟାନ୍ତଟି ମଧ୍ୟରେ ଏକ ସଫଳ ଚିତ୍ରକଳ୍ପର ମହତ୍ତ୍ୱ ଲାଭ କରିଛି। ଏ କ୍ଷେତ୍ରରେ, ସୂର୍ଯ୍ୟାଲୋକର ସ୍ପର୍ଶରେ ପଦ୍ମ ବିକଶିତ ହେବାର ପାରଂପରିକ କବି-ଆଦର୍ଶଟି ଲକ୍ଷ୍ୟଣୀୟ ନୁହେଁ; ବରଂ, ଶୋକ ବିହ୍ୱଳତା ସୀତାଙ୍କ ହୃଦୟ ନିମିତ୍ତ

ଶିଶିର-ସ୍ନାତ ପଦ୍ମର ରୂପ ପ୍ରଦାନ କରିବା ଅଧିକ ସ୍ପଷ୍ଟ ତଥା ଗମ୍ଭୀର । ଅଧିକନ୍ତୁ, ସେହି ଶିଶିର ବିନ୍ଦୁ ମଧ୍ୟରେ ସୂର୍ଯ୍ୟରଶ୍ମିର ପ୍ରତିବିମ୍ବ ଯେପରି ସ୍ୱାଭାବିକ; ରାମଚନ୍ଦ୍ରଙ୍କ କର୍ତ୍ତୃକ ନିର୍ବାସିତା ହୋଇଥିଲେ ମଧ୍ୟ ଏବଂ ସେହି ଦୃଷ୍ଟିରୁ ସୀତା ଶୋକ ଜର୍ଜରିତା ହୋଇଥିଲେ ମଧ୍ୟ ତାତ୍କାଳିକ ଅବସ୍ଥାରେ ଯେଉଁ ସବୁ ପ୍ରତିଛବି ତାଙ୍କ ଜୀବନର ଧ୍ୟେୟ ଥିଲେ ସେହି ରାମଚନ୍ଦ୍ର, ଅତଏବ, ପ୍ରାତଃକାଳରେ ଶଯ୍ୟାତ୍ୟାଗ କରି ଉଠିଗଲାବେଳେ ହୃଦୟ ମଧ୍ୟରେ ସେହି ପତିଙ୍କର ସ୍ମୃତି ହିଁ ହୋଇଛନ୍ତି ସତୀ ସୀତାଙ୍କର ସମ୍ବଳ । ପୁରାତନରେ ନୂତନତାର ରୂପ ପ୍ରଦାନ କରିବା ହିଁ କବି ପ୍ରତିଭା । ଏକ ପ୍ରାଚୀନ ପାରଂପରିକ ରୂପକଳ୍ପ ମଧ୍ୟରେ ନୂତନ ତଥା ମୌଳିକତାର ଏତାଦୃଶ ସ୍ପର୍ଶ ଦେଇ କବି ମେହେର ନିଜ ପ୍ରତିଭାକୁ ସାବ୍ୟସ୍ତ କରିପାରିଛନ୍ତି ଉପର୍ଯ୍ୟୁକ୍ତ ଦୃଷ୍ଟାନ୍ତ ମଧ୍ୟରେ ।

ପରବର୍ତ୍ତୀ ଉଦାହରଣ ମଧ୍ୟରେ ଗର୍ଭାଳସୀ ସୀତାଙ୍କ ନିମିତ୍ତ ଗ୍ରହ-ନକ୍ଷତ୍ର ରାଜ୍ୟରୁ ଏକ ପରିଚିତ ରୂପକଳ୍ପ ଗୃହୀତ ହୋଇଅଛି । ତାପସୀ ପରିବେଷ୍ଟିତା ଗର୍ଭାଳସୀ ସୀତାଙ୍କ ନିମିତ୍ତ ପରିଧି ଯୁକ୍ତ ଏକ ଚନ୍ଦ୍ରମଣ୍ଡଳର ଉପମାନ ରୂପ ଧର୍ମିତା ଦୃଷ୍ଟିରୁ ଆକର୍ଷଣୀୟ । 'ବୈଦେହୀଶ ବିଳାସ'ରେ ସୀତାଙ୍କ ନିମିତ୍ତ ଗ୍ରହ-ନକ୍ଷତ୍ର ରାଜ୍ୟରୁ ଗୃହୀତ ବହୁ ଚମତ୍କାର ରୂପକଳ୍ପର ପ୍ରୟୋଗ କରାଯାଇଅଛି । କିନ୍ତୁ, ସୀତାଙ୍କ ଗର୍ଭାଳସୀ ଅବସ୍ଥା 'ବୈଦେହୀଶ ବିଳାସ'ର କାବ୍ୟ-ପରିଧି ମଧ୍ୟରେ ଅନ୍ତର୍ଭୁକ୍ତ ନୁହେଁ । ଅତଏବ, ଗର୍ଭାଳସୀ ସୀତାଙ୍କ ନିମିତ୍ତ ଚନ୍ଦ୍ରମଣ୍ଡଳର ଏବଂ ମୁନିକୁମାରୀଙ୍କ ଗହଣରେ ତାହା ପୁଣି ପରିଧିଯୁକ୍ତ ହେବାର ସଫଳ କଳ୍ପନା ବସ୍ତୁତଃ ଅର୍ଥଶକ୍ତି ସମ୍ପନ୍ନ । କାରଣ, ସୀତାଙ୍କ ସୌନ୍ଦର୍ଯ୍ୟ ମଧ୍ୟରେ ଚନ୍ଦ୍ରମାର ଲାବଣ୍ୟ ବ୍ୟଞ୍ଜିତ ହେଉଥିଲେ ମଧ୍ୟ ଗର୍ଭାଳସୀ ଅବସ୍ଥାରେ ତାହାଙ୍କ ସହିତ 'ଚନ୍ଦ୍ରମଣ୍ଡଳ'ର ସାମ୍ୟ କଳ୍ପନା ମଧ୍ୟରେ ସୀତାଙ୍କ ଲାବଣ୍ୟ ଉପରେ ନୂତନତାର ଏକ ଆସ୍ତରଣ ଲକ୍ଷ୍ୟ କରାଯାଇ ପାରେ ।

ସେହି ଗ୍ରହ-ନକ୍ଷତ୍ର ରାଜ୍ୟରୁ ଅପର ଦୃଷ୍ଟାନ୍ତଟି ମଧ୍ୟରେ ଅନ୍ୟ ଏକ ରୂପକଳ୍ପ ଗୃହୀତ ହୋଇଅଛି । ପୁରାଣ ଶାସ୍ତ୍ରରୁ ସ୍ୱାହା, ସଂଜ୍ଞା ଓ ଅଶ୍ୱିନୀକୁମାରଙ୍କ ରୂପ ଗ୍ରହଣ କରି ଅଭିବ୍ୟକ୍ତ କରାଯାଇଅଛି; ସୀତା ଓ

ଅନୁକମ୍ପା ଲବକୁଶଙ୍କୁ ଧରି ସେତେବେଳେ କୁମାରଙ୍କ ନାମକରଣ ଉତ୍ସବ-ମଣ୍ଡପରେ ଉପସ୍ଥିତ ହୋଇଛନ୍ତି । ପରେ ପରେ ଅନ୍ୟ ଏକ ଚିତ୍ରକଳ୍ପ କବି ପ୍ରୟୋଗ କରିଛନ୍ତି । ଶେଷଗର୍ଭର ଆକାଶରେ କୃଷ୍ଣା ତ୍ରୟୋଦଶୀର ସୁଧାକର ନିକଟରେ ପ୍ରଜ୍ଜ୍ୱଳ ତାରାର ଉଦୟ ଯେଉଁ ଭଳି ଚମତ୍କାର ଦେଖାଯାଏ; ସତୀ ସୀତାଙ୍କ ନିକଟରେ ବ୍ରହ୍ମଚାରିଣୀ ଅନୁକମ୍ପା ସେହିଭଳି ଦେଖାଯାଉଛନ୍ତି । ପୁଣି, ଗ୍ରୀଷ୍ମଦଗ୍ଧ ନିଦାଘ କିରଣ ଲାଭ କରି ଉଲ୍ଲସିତ କମଳବନ ବନ-ପରି ସୀତା-ଚିତ୍ତ ଉପହାର ଲାଭକରି ମୁନିକୁମାରୀମାନେ ସୀତାଙ୍କ ନିକଟରେ ଶୋଭା ପାଉଛନ୍ତି । ସୀତାଙ୍କ ନିମିତ୍ତ କୃଷ୍ଣା ତ୍ରୟୋଦଶୀର ଚନ୍ଦ୍ର ଏବଂ ଉଷାର ଉପମାନ ପ୍ରଦାନ ବସ୍ତୁତଃ ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ ।

ଉକ୍ତ ଦୃଷ୍ଟାନ୍ତଟି ମଧ୍ୟରେ ଏକ ନୂତନ ଚିତ୍ରକଳ୍ପର ସମ୍ଭାବନା କବି ମେହେର କରିପାରିଛନ୍ତି । ରତ୍ନ ଖଣିର ଗଭୀର କନ୍ଦର ରତ୍ନ ଦ୍ୱାରା ଶୋଭା ପାଇଲା ପରି ସତୀ ସୀତା ଦୁଇ ପୁତ୍ରରତ୍ନଙ୍କ ଦ୍ୱାରା ସୌନ୍ଦର୍ଯ୍ୟ ପ୍ରାପ୍ତ ହୋଇଛନ୍ତି । ସାଧାରଣ ଭାବରେ ଏତାଦୃଶ ସାମ୍ୟକଳ୍ପନା ବସ୍ତୁତଃ କବିଙ୍କ ଅଭିପ୍ରାୟ ନୁହେଁ । ଉକ୍ତ ଚିତ୍ରକଳ୍ପ ମଧ୍ୟରେ ଏକ ବ୍ୟଞ୍ଜନା ଅନ୍ତର୍ଭୁକ୍ତ ହୋଇଅଛି । ଉତ୍ତର ଜୀବନର ଅପୂତ ବେଦନା ପ୍ରଭାବରେ ସୀତାଙ୍କ ହୃଦୟ ଅଧିକ ଗଭୀର ହୋଇଛି । ଏବଂ ବେଦନାର ତୀବ୍ରତା ଏହି ଗଭୀରତାକୁ ଅନ୍ଧକାରଚ୍ଛନ୍ନ କରି ଦେଉଛି । ଅନ୍ଧକାରଚ୍ଛନ୍ନ ଗଭୀରତାର ସାମ୍ୟ କଳ୍ପନା କରାଯାଇଛି ଏକ ଖଣି ସହିତ । ଏହା ସତ୍ତ୍ୱେ, ସେ ଖଣିଟି କିନ୍ତୁ ଏକ ରତ୍ନଖଣି, ଏବଂ ରତ୍ନର ଉପସ୍ଥିତିରେ ଖଣିଗର୍ଭର ଅନ୍ଧକାର ଆଲୋକିତ ହୋଇଯାଉଅଛି । ସୀତାଙ୍କର ଜୀବନର ତାତ୍କାଳିକ ଅବସ୍ଥା ନିମିତ୍ତ ଏତାଦୃଶ ଏକ ଚିତ୍ରକଳ୍ପ ଯଥାର୍ଥରେ ମନୋଜ୍ଞ ।

ଏଭଳି ବହୁ ଚିତ୍ରକଳ୍ପର ମନୋହାରୀ ସମାବେଶରେ କାବ୍ୟ-ନାୟିକା ସୀତାଙ୍କ ଜୀବନର ଉତ୍ତର ପର୍ବ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ କବି ମେହେରଙ୍କ ପ୍ରତିଭା-ଦୀପ୍ତ ଲେଖନୀରେ ମୂର୍ତ୍ତିମନ୍ତ ହୋଇ ଉଠିଛି ।

## ଉପସଂହାର —

ଉକ୍ତ ପ୍ରବନ୍ଧ ମଧ୍ୟରେ 'ବୈଦେହୀଶ ବିଳାସ' ତଥା 'ତପସ୍ୱିନୀ'ର କାବ୍ୟ-ନାୟିକା ସୀତାଙ୍କ ସୌନ୍ଦର୍ଯ୍ୟ ତଥା ମହତ୍ତ୍ୱର ଅଭିବ୍ୟକ୍ତି ନିମିତ୍ତ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ସ୍ୱଭାବ କବି ଗଙ୍ଗାଧର ମେହେର ପ୍ରୟୋଗ କରିଥିବା କେତେକ ଚିତ୍ରକଳ୍ପର ବିଶ୍ଳେଷଣ କରାଯାଇଅଛି । ଉଭୟ କାବ୍ୟର କାବ୍ୟ-ନାୟିକା ସୀତା ହେଲେ ମଧ୍ୟ 'ବୈଦେହୀଶ ବିଳାସ' କାବ୍ୟରେ ସୀତାଙ୍କ ଜୀବନର ଆଦ୍ୟ ପର୍ବ ଏବଂ 'ତପସ୍ୱିନୀ' କାବ୍ୟରେ ସେହି କାବ୍ୟ-ନାୟିକାର ଉତ୍ତର ପର୍ବର ଜୀବନକୁ ହିଁ କାବ୍ୟର ଉପାଦାନ ଦୃଷ୍ଟିରୁ ଗ୍ରହଣ କରାଯାଇଅଛି । ଉଭୟ କାବ୍ୟର ଅଧ୍ୟୟନ ପରେ ପାଠକ ସୀତା ଜୀବନର ସାମଗ୍ରିକ ପରିଚୟ ଲାଭ କରିଥାଏ । ପୁନଶ୍ଚ, ସୀତାଙ୍କ ଜୀବନର ବିବର୍ତ୍ତନ ମଧ୍ୟ ଉଭୟ କାବ୍ୟର ସହାୟତାରେ ହିଁ ପ୍ରତିପାଦିତ । ଏ ଦୃଷ୍ଟିରୁ ସୀତା ଚରିତ୍ରର ଅଭିବ୍ୟକ୍ତି ନିମିତ୍ତ ଯେଉଁ ସବୁ ଚିତ୍ରକଳ୍ପ ଉଭୟ କବି ପ୍ରୟୋଗ କରିଛନ୍ତି, ସେହି ସବୁ ଚିତ୍ରକଳ୍ପ ମଧ୍ୟରେ ସୀତା ଚରିତ୍ରର ବିବର୍ତ୍ତନ ପ୍ରଭାବଶାଳୀ ଭାବରେ ଲକ୍ଷ୍ୟ କରାଯାଇଅଛି । ଉଭୟ କାବ୍ୟ ମଧ୍ୟରେ ପ୍ରଯୁକ୍ତ କେତେକ ସୁନିର୍ବାଚିତ ଚିତ୍ରକଳ୍ପର ବିଶ୍ଳେଷଣକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଅଛି । ପ୍ରଥମତଃ, ଉପମାନ ଦୃଷ୍ଟିରୁ ଉଭୟ କବିଙ୍କ ଚିତ୍ର-କଳ୍ପନା ଏବଂ ସେହି ଉପମାନ ମଧ୍ୟରେ କାବ୍ୟର ପ୍ରତିପାଦ୍ୟ ଦୃଷ୍ଟିରୁ ଯେଉଁ ଗଭୀର ଅର୍ଥ-ବ୍ୟଞ୍ଜନା ଗର୍ଭିତ ହୋଇଅଛି, ତାହାର ବିଶ୍ଳେଷଣ କରାଯାଇଅଛି । ଦ୍ୱିତୀୟତଃ, ଭିନ୍ନ ଉପମେୟ ଦୃଷ୍ଟିରୁ ଉଭୟ କବିଙ୍କ କଳ୍ପନା ଦୃଷ୍ଟିରେ ଯେଉଁ ସବୁ ଉପମାନ ଗୃହୀତ ହୋଇଅଛି ଏବଂ ତନ୍ମଧ୍ୟରେ କାବ୍ୟାଦର୍ଶ ଓ ଯୁଗାଦର୍ଶ ଦୃଷ୍ଟିରୁ ଉଭୟ କବିଙ୍କ ମନୋଜ୍ଞ ଚିତ୍ରକଳ୍ପଗୁଡ଼ିକ ମଧ୍ୟରେ ଯେଉଁ ଭାବ-ବ୍ୟଞ୍ଜନା ଗର୍ଭିତ ହୋଇଛି, ତାହାର ବିଶ୍ଳେଷଣ କରାଯାଇଅଛି । ଏବଂ ତୃତୀୟତଃ, ଉଭୟ କବି କାବ୍ୟର ପ୍ରତିପାଦ୍ୟ ଦୃଷ୍ଟିରୁ ଯେଉଁ କେତେଗୋଟି ଚମତ୍କାର ଚିତ୍ରକଳ୍ପର ସମାବେଶ କରିଛନ୍ତି, ତାହାର ପୃଥକ ବିଶ୍ଳେଷଣ ମଧ୍ୟ କରାଯାଇଅଛି ।

କାବ୍ୟର ଉପାଦାନ ଦୃଷ୍ଟିରୁ 'ବୈଦେହୀଶ ବିଳାସ' ଏବଂ 'ତପସ୍ୱିନୀ' ଉଭୟେ ପୌରାଣିକ କାବ୍ୟର ପ୍ରତିପାଦ୍ୟ ଏବଂ କାବ୍ୟ-ନାୟିକାର ସ୍ୱରୂପରେ ଏ କ୍ଷେତ୍ରରେ ଉଭୟ କବିଙ୍କ ସ୍ୱାତନ୍ତ୍ର୍ୟ ଶୃଙ୍ଖଳିତ ।

ତଥାପି, ନିଜ ନିଜର ପ୍ରତିଭା ତଥା ମୌଳିକତାର ସ୍ପର୍ଶ ଉଭୟ କବି ଦେଇପାରିଛନ୍ତି ଏହି ଦୁଇଟି କାବ୍ୟ ମଧ୍ୟରେ । ତାହା ଛଡ଼ା, କାବ୍ୟାଦର୍ଶ, ଯୁଗାଦର୍ଶ ଏବଂ କବିର ବ୍ୟକ୍ତିକ ମାନସିକତା ଦ୍ୱାରା ପ୍ରଭାବିତ ହୋଇଥିବା ଲକ୍ଷ୍ୟ କରାଯାଇଅଛି । 'ବୈଦେହୀଶ ବିଳାସ' ଶକ୍ତିଶାଳୀ ଶ୍ରେଷ୍ଠ ଯୁଗୀୟ କବି ଉପେନ୍ଦ୍ର ଭଞ୍ଜଙ୍କ କୃତି, ଯେଉଁଥିରେ ସୀତାଙ୍କ ପୂର୍ବାର୍ଦ୍ଧ ଜୀବନ ଉପଜୀବ୍ୟ ହୋଇଅଛି । ଉକ୍ତ କାବ୍ୟର ଅଙ୍ଗୀରସ ଶୃଙ୍ଗାର; କରୁଣରସର ବ୍ୟଞ୍ଜନା ଏ କାବ୍ୟ-କ୍ଷେତ୍ରରେ ରସ ନିଷ୍ପତ୍ତି ଦୃଷ୍ଟିରୁ ସହାୟକ ମାତ୍ର । ପକ୍ଷାନ୍ତରେ, 'ତପସ୍ୱିନୀ' ଆଧୁନିକ ଯୁଗର ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଏକ ସଫଳ ସୃଷ୍ଟି । ଏହି କାବ୍ୟର ପ୍ରମୁଖ ରସ କରୁଣ ଏବଂ ସୀତାଙ୍କ ଜୀବନର ଉତ୍ତରାର୍ଦ୍ଧ ହିଁ ଏହି କାବ୍ୟର ଉପଜୀବ୍ୟ । ଏହା ବକ୍ତବ୍ୟର ତାତ୍ପର୍ଯ୍ୟ ହେଲା-ଉଭୟ କାବ୍ୟର କାବ୍ୟ-ନାୟିକା ସୀତା ଏବଂ ଉଭୟ କାବ୍ୟ ମଧ୍ୟରେ ସେହି କାବ୍ୟ-ନାୟିକାର ବିବର୍ତ୍ତନର ସ୍ପଷ୍ଟ ଚିତ୍ର ଥିଲେ ମଧ୍ୟ ସୀତାଙ୍କ ଚରିତ୍ର ଏ ଦୁଇଟି କାବ୍ୟ ମଧ୍ୟରେ ଯେଉଁ ସବୁ ସାର୍ଥକ ଚିତ୍ରକଳ୍ପ ଗୁଡ଼ିକ ପ୍ରଯୁକ୍ତ ହୋଇଛନ୍ତି; ତାହା କାବ୍ୟର ରସ ସମ୍ପଦ ଦୃଷ୍ଟିରୁ, ଯୁଗାଦର୍ଶ ଦୃଷ୍ଟିରୁ ଏବଂ ଉଭୟ କବିଙ୍କ ବ୍ୟକ୍ତିଗତ ଅଭିରୁଚି ଓ ମାନସିକତା ଦୃଷ୍ଟିରୁ ଭିନ୍ନ ବ୍ୟଞ୍ଜନା ଲାଭ କରିଛନ୍ତି । 'ବୈଦେହୀଶ ବିଳାସ' ମଧ୍ୟରେ ସୀତାଙ୍କ ରୂପଗତ ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରିଯିବା ଯେପରି ସ୍ୱାଭାବିକ, ସେପରି ମଧ୍ୟ 'ତପସ୍ୱିନୀ' କାବ୍ୟରେ ସୀତାଙ୍କ ଆଭ୍ୟନ୍ତରୀଣ ମହତ୍ତ୍ୱର ଉଦ୍‌ଘାଟନ ନିମିତ୍ତ ସଫଳ ପ୍ରୟାସ କରାଯାଇଥିବା ଲକ୍ଷ୍ୟଣୀୟ । 'ତପସ୍ୱିନୀ' କାବ୍ୟ ମଧ୍ୟରେ ସୀତାଙ୍କ ରୂପ ଲାବଣ୍ୟର ପ୍ରତ୍ୟକ୍ଷ ବର୍ଣ୍ଣନା ପରିବେଷିତ ନ ହୋଇ, ବରଂ ତାହା ସୂକ୍ଷ୍ମ ଭାବରେ ବ୍ୟଞ୍ଜିତ ହୋଇଅଛି । ଠିକ୍ ସେହିପରି, 'ବୈଦେହୀଶ ବିଳାସ' କାବ୍ୟ ମଧ୍ୟରେ ସୀତା ଚରିତ୍ରର ଆଭ୍ୟନ୍ତରୀଣ ମହତ୍ତ୍ୱର ପ୍ରତ୍ୟକ୍ଷ ଚିତ୍ର ପରିବେଷିତ ନ ହୋଇ ବରଂ ତାହାଙ୍କର ଚମତ୍କାର ରୂପସୌନ୍ଦର୍ଯ୍ୟ ମଧ୍ୟରେ ତାହା ବ୍ୟଞ୍ଜିତ ହୋଇଅଛି । ଯେଉଁ କାବ୍ୟର ପ୍ରତିପାଦ୍ୟ ରସ ଶୃଙ୍ଗାର, ସେଥିରେ କାବ୍ୟ-ନାୟିକାର ରୂପଗତ ସୌନ୍ଦର୍ଯ୍ୟ ଓ ଆକର୍ଷଣୀୟତା କବିର ପ୍ରଥମ ଲକ୍ଷ୍ୟ । ଯେଉଁ କାବ୍ୟର ମୁଖ୍ୟରସ କରୁଣ, କାବ୍ୟ-ନାୟିକାର ହାର୍ଦ୍ଦିକ ମନୋହାରିତା ପ୍ରତିପାଦନ କରିବା ସେହି କବିର ସର୍ବାଦୌ ଅଭିପ୍ରାୟ । ପୁନଶ୍ଚ, ଖଣ୍ଡପୂରର ପ୍ରତିଷ୍ଠିତ କବି

ଉପେନ୍ଦ୍ର ଭଞ୍ଜଙ୍କ ପାଣ୍ଡିତ୍ୟ ଓ ଶକ୍ତିର ସ୍ପର୍ଶରେ ତାହାଙ୍କ ଦ୍ୱାରା ପରିବେଷିତ ଚିତ୍ରକଳ୍ପଗୁଡ଼ିକ ଯେପରି ଶକ୍ତିଶାଳୀ ଓ ଚମତ୍କାର; ପକ୍ଷାନ୍ତରେ, ଆଧୁନିକ ଯୁଗର ସ୍ରଷ୍ଟା କବିଙ୍କ ଲେଖନୀରୁ ଯେଉଁ ଚିତ୍ରକଳ୍ପ ଗୁଡ଼ିକର ସୃଷ୍ଟି ହୋଇଛି, ତାହା ସବୁ ସେଭଳି ଗଭୀର ଭାବ ବ୍ୟଞ୍ଜନାପୂର୍ଣ୍ଣ ତଥା ମନୋହାରୀ।

ଓଡ଼ିଆ ସାହିତ୍ୟର ସାରସ୍ୱତ ଭଣ୍ଡାରରେ ଉଭୟ କାବ୍ୟ ଏକ ଏକ ଅମଳନ ରତ୍ନ। ଉପେନ୍ଦ୍ର ଭଞ୍ଜଙ୍କ ଶ୍ରେଷ୍ଠତମ କାବ୍ୟ 'ବୈଦେହୀଶ ବିଳାସ' ଗଙ୍ଗାଧରଙ୍କ ମଧ୍ୟ ସର୍ବୋତ୍ତମ କାବ୍ୟ 'ତପସ୍ୱିନୀ' ରାମାୟଣର ମୁଖ୍ୟ ନାୟିକା ସୀତା ଆର୍ଯ୍ୟ ପରଂପରାରେ ଅନ୍ୟତମ ଶ୍ରେଷ୍ଠ ମହୀୟସୀ ନାରୀ। ଉଭୟ କାବ୍ୟ ମଧ୍ୟରେ ସେହି କାବ୍ୟ-ନାୟିକା, ତାହାଙ୍କର ଚରିତ୍ର ନାଟକୀୟ ଜୀବନ ଉଭୟ କାବ୍ୟର ପ୍ରତିପାଦ୍ୟ ବିଷୟ ସେହି ଜୀବନର ପୂର୍ବାର୍ଦ୍ଧ 'ବୈଦେହୀଶ ବିଳାସ' କାବ୍ୟ ମଧ୍ୟରେ ଏବଂ ଉତ୍ତରାର୍ଦ୍ଧ 'ତପସ୍ୱିନୀ' କାବ୍ୟ ମଧ୍ୟରେ ସଫଳ ଭାବରେ ପରିବେଷିତ ହୋଇଅଛି। ଅତଏବ, ଏ କ୍ଷେତ୍ରରେ ଉଭୟ କବିଙ୍କ ଚିତ୍ରକଳ୍ପର ସମାବେଶରେ ଏକ ଅପରର ପ୍ରତିଦ୍ୱନ୍ଦ୍ୱ। ବିଚାରର ନିତାନ୍ତ ପ୍ରୟୋଜନ। ବରଂ ଦୃଢ଼ ଭାବରେ କୁହାଯାଇପାରେ, ଚିତ୍ରକଳ୍ପ ଯୋଜନାରେ ଉଭୟ କାବ୍ୟର ପ୍ରତିପାଦ୍ୟ ଦୃଷ୍ଟିରୁ ଏକ ନିର୍ଦ୍ଦିଷ୍ଟ ବିବର୍ତ୍ତନ ସ୍ପଷ୍ଟତଃ ଲକ୍ଷ୍ୟଣୀୟ। ପାଠକର ରୁଚି ଦୃଷ୍ଟିରୁ ଉଭୟ କାବ୍ୟର ଚିତ୍ରକଳ୍ପଗତ ମନୋହାରିତା ଗ୍ରହଣୀୟ।

—×××—

# ନୈଷଧ ଓ ଭଞ୍ଜୀୟ କାବ୍ୟଶ୍ରୀ

ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ

ଉତ୍କଳ ସାହିତ୍ୟାକାଶର ଅତି ଭାସ୍ୱର ପ୍ରଭାକର ତଥା ସାହିତ୍ୟ ସାମ୍ରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଉତ୍କଳର ଘରେ ଘରେ ଅତି ଘନିଷ୍ଠ ଭାବରେ ମଣ୍ଡିତ। ସାହିତ୍ୟ ଜଗତରେ ତାଙ୍କର ସାଧନାମୈତ୍ରିକ ବାଣୀ ଆବେଦନ ତଥା ତାଙ୍କର ଅସାଧାରଣ ପ୍ରତିଭା ସମ୍ପର୍କ କେହି ପ୍ରାୟତଃ ଦୃଷ୍ଟିଗୋଚର ହୁଅନ୍ତି ନାହିଁ। ଓଡ଼ିଆ ସାହିତ୍ୟକୁ ସେ ସ୍ୱ ଅସାଧାରଣ ସାଧନା, ମନସ୍ୱୀ କଳ୍ପନା ଓ ଅନବଦ୍ୟ ଶୈଳୀ ବଳରେ ଯେଉଁପରି ଭାବରେ ପୁଷ୍ଟ କରିପାରିଛନ୍ତି ତାହା ଅନନ୍ୟ ସାଧାରଣ। ସମୃଦ୍ଧ ସଂସ୍କୃତ-ସାହିତ୍ୟ-କାନନର ଅରଣ୍ୟ ଉଦ୍ୟାନ ମଧ୍ୟରେ ପରିଭ୍ରମଣ କରି ବିଭିନ୍ନ ସୁରଭି ସୁନ୍ଦର ସୁମନ ଚୟନରେ ସେ ଉତ୍କଳ ଭାରତୀଙ୍କୁ ଯେଉଁପରି ଭାବରେ ବିଭୂଷିତ କରିପାରିଛନ୍ତି, ତାହା ତାଙ୍କର ଏକନିଷ୍ଠ ବାଣୀ ଆରାଧନାର ସୁସ୍ପଷ୍ଟ ପରିଚୟ ପ୍ରଦାନ କରେ। ସମୃଦ୍ଧ ଭାବଧାରା ସମନ୍ୱିତ ତଥା ଅମରରସ ବର୍ଣ୍ଣନା ମାଦକ ରସପୂର୍ଣ୍ଣ ସଂସ୍କୃତ ସାହିତ୍ୟର କାବ୍ୟରାଜି ତତ୍କାଳୀନ ବିଦଗ୍ଧଜନମାନଙ୍କ ମଧ୍ୟରେ ସମାଦୃତ ହେଉଥିବା ଦେଖି ଏବଂ ସମୃଦ୍ଧ ସଂସ୍କୃତ ସାହିତ୍ୟ ସମ୍ମୁଖରେ ସ୍ୱ ମାତୃକଳ୍ପା ମାତୃଭାଷାରେ ସାହିତ୍ୟ ରଚନାର ଅଭାବ ଲକ୍ଷ୍ୟ କରି ମାତୃଭାଷାର ଦୀନତା ଦୂରୀକରଣ ନିମିତ୍ତ କବିବର ଯେଉଁପରି ଭାବରେ ଦୃଢ଼ସଙ୍କଳ୍ପ ହୋଇ ସ୍ୱ ଅଦ୍ଭୁତପୂର୍ବ ସୃଜନ ଶକ୍ତି ବଳରେ କାବ୍ୟ କବିତାର ଅପୂର୍ବ ଉତ୍ସ ସୃଷ୍ଟି କରି ଏ ଦେଶର ଶୁଷ୍କ ମୃତ୍ତିକାକୁ କଲ୍ଲୋଳସମ୍ବଳିତ କରି ସ୍ୱଦେଶବାସୀଙ୍କୁ ଚତୁର୍ବର୍ଗ ଫଳ ଲାଭ କରିବାର ପଥ ପ୍ରଦର୍ଶନ କରିଗଲେ ତାହା ତାଙ୍କର ଅପୂର୍ବ ଅନୁପମ ଦେଶପ୍ରୀତିର ସମୁଜ୍ଜ୍ୱଳ ନିଦର୍ଶନ। କବିସମ୍ରାଟ୍ ଭଞ୍ଜ ଅତି ଅଳ୍ପ ସମୟ ମଧ୍ୟରେ ସଂସ୍କୃତ ସାହିତ୍ୟର ବିଭିନ୍ନ କାବ୍ୟ, ଅଳଙ୍କାର, ବ୍ୟାକରଣ, ନାଟକାଦି ସହ ବିଭିନ୍ନ କୋଷଗ୍ରନ୍ଥମାନ ଅଧ୍ୟୟନ କରି ତା'ର ସମୁଜ୍ଜ୍ୱଳ ବୈଭବରାଶି ଦ୍ୱାରା ଓଡ଼ିଆ ସାହିତ୍ୟକୁ ସୁସମୃଦ୍ଧ କରିଯାଇଛନ୍ତି। ତେଣୁ କବି

ତାଙ୍କ ସାହିତ୍ୟର ପ୍ରଭାବ ବିଶେଷ ଭାବେ ପରିଲକ୍ଷିତ ହୁଏ । ସଂସ୍କୃତ ସାହିତ୍ୟର ପ୍ରସିଦ୍ଧ ଷଟ୍‌କାବ୍ୟ ତାଙ୍କ ଅଧ୍ୟୟନର ପରିସର ମଧ୍ୟରୁ ବହିର୍ଭୂତ ହୋଇ ନ ଥିଲା । ତେଣୁ ସେଗୁଡ଼ିକର ପ୍ରଭାବ ତାଙ୍କ କାବ୍ୟର ଛତ୍ରେ ଛତ୍ରେ ଉପଲବ୍ଧ ହୁଏ । କାଳିଦାସ, ଭାରବି, ମାଘ ଓ ଶ୍ରୀହର୍ଷ ଆଦି ସଂସ୍କୃତ ସାହିତ୍ୟ-ସ୍ରଷ୍ଟାମାନଙ୍କର ପ୍ରଭାବରେ ସେ ଏତେ ପରିମାଣରେ ପ୍ରଭାବିତ ଯେ, ସଂସ୍କୃତ ସାହିତ୍ୟ ଜଗତରେ ଉପମା ଓ ଅର୍ଥଗୌରବ ନିମିତ୍ତ ପ୍ରତିଷ୍ଠା ଲାଭ କରିଥିବା କାଳିଦାସ ଓ ଭାରବିଙ୍କ ସହ ତାଙ୍କର ତୁଳନା କରଯାଇ କୁହାଯାଏ.. 'ଉପମା ଭଞ୍ଜୀରସ୍ୟ ତସ୍ୟୈବ ହ୍ୟର୍ଥ ଗୌରବମ୍ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ସଂସ୍କୃତ ସାହିତ୍ୟ ଜଗତରେ ଅସାମାନ୍ୟ ପ୍ରତିଭା ସମ୍ପନ୍ନ କବି ଶ୍ରୀହର୍ଷ ଯେ କି ଦୃପ୍ତ ସ୍ୱରରେ କହିଥିଲେ —

'ସାହିତ୍ୟେ ସୁକୁମାର ବସ୍ତୁନି
ଦୃଢ଼ ନ୍ୟାୟ ଗ୍ରହ ଗ୍ରନ୍ଥିଲେ ।
ତର୍କେ ବା ମୟି ସଂବିଧାତରି
ସମଂ ଲୀଳାୟତେ ଭାରତୀ' ॥

— ତାଙ୍କର ପ୍ରଭାବ ଭଞ୍ଜଙ୍କ ଉପରେ ବିଶେଷ ଭାବରେ ପଡ଼ିଛି, କାରଣ ତତ୍‌କୃତ 'ନୈଷଧୀୟ ଚରିତମ୍' ଏକାଧାରରେ ପଦ ଲାଳିତ୍ୟ, ଭାବଗାମ୍ଭୀର୍ଯ୍ୟ, ଉପମା ବିନ୍ୟାସ ତଥା ବର୍ଣ୍ଣନା ନୈପୁଣ୍ୟ ନିମିତ୍ତ ସମସ୍ତ ସୁଧୀ ପାଠକମାନଙ୍କ ନିକଟରେ ସୁପରିଚିତ । ଏପରି କି ନୈଷଧ କାବ୍ୟ ରଚନା ପରେ ନୈଷଧକାରଙ୍କ ପୂର୍ବବର୍ତ୍ତୀ ପ୍ରତିଷ୍ଠିତ କବିମାନଙ୍କର ଆଦର ପାଠକ ସମାଜରେ ହ୍ରାସ ପାଇ ଯାଇଥିଲା । ତେଣୁ କହି କୁହାଯାଏ—

'ତାବଦ୍ ଭାଃ ଭାରବେର୍ଭାତି ଯାବନ୍ମାଘସ୍ୟ ନୋଦୟଃ ।
ଉଦିତେ ନୈଷଧେ କାବ୍ୟେ କ୍ୱ ମାଘଃ କ୍ୱ ଚ ଭାରବିଃ ॥

ବାସ୍ତବରେ ଶ୍ରୀହର୍ଷ କେବଳ ମହା କବିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ନ ଥିଲେ, ପରନ୍ତୁ ବିବିଧ ଶାସ୍ତ୍ର ପାଣ୍ଡିତ୍ୟରେ ବିପକ୍ଷ-ପକ୍ଷ ଛେଦନ ତଥା ଖଣ୍ଡନ ଖଣ୍ଡଖାଦ୍ୟବତ୍ ତର୍କ କର୍କଶବାଣୀ ରଚନାରେ ସେ ସିଦ୍ଧହସ୍ତ ଥିଲେ । ଉତ୍ପ୍ରେକ୍ଷା, ଉପମା, ରୂପକ, ଯମକ, ଅତିଶୟୋକ୍ତି, ଶ୍ଳେଷାଦି

ଅଳଙ୍କାର ସମନ୍ୱିତ ଉକ୍ତ କାବ୍ୟରେ କବିବର ଶୃଙ୍ଗାର ରସ ବର୍ଣ୍ଣନାରେ ଯେଉଁପରି ମାଧୁର୍ଯ୍ୟ ତଥା ଅଳଂକାରମାନଙ୍କର ସମୁଚିତ ପ୍ରୟୋଗରେ ଯେଉଁପରି ବୈଦଗ୍ଧ୍ୟ ପ୍ରକଟନ କରିଯାଇଛନ୍ତି ତାହା ଅତୁଳନୀୟ ।

## ନୈଷଧୀୟ ପ୍ରଭାବର କାରଣ—

ତେଣୁ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ମଧ୍ୟ ତାଙ୍କର କାବ୍ୟାବଳୀକୁ ଉପରୋକ୍ତ ସୁଗୁଣ ସମଳଂକୃତ କରି ନୈଷଧକାରଙ୍କର ପଦାନୁସରଣ ଦ୍ୱାରା ତାଙ୍କ ପରି ଖ୍ୟାତି ଲାଭ କରିବା ପ୍ରୟାସ କରିଥାଇ ପାରନ୍ତି । ଏତଦ୍‌ବ୍ୟତୀତ କବି ଯେତେ ପ୍ରତିଭାଶାଳୀ ହେଲେ ସୁଦ୍ଧା ପରବର୍ତ୍ତୀ କବିମାନଙ୍କ ଉପରେ ପୂର୍ବବର୍ତ୍ତୀ କବିମାନଙ୍କର ପ୍ରଭାବ ପଡ଼ିବା ସ୍ୱାଭାବିକ । ବିଶେଷତଃ ପୂର୍ବବର୍ତ୍ତୀ କବି ଯଦି ସମ ଅଞ୍ଚଳୀୟ ବା ଏକ ମଣ୍ଡଳୀୟ ହୋଇଥାନ୍ତି ତେବେ ତାଙ୍କର ପ୍ରଭାବ ପଡ଼ିବା ଅନିବାର୍ଯ୍ୟ । ମହାକବି ଶ୍ରୀହର୍ଷ ପ୍ରାୟ ଖ୍ରୀ : ୧୦୪୦—୧୧୨୦ ମଧ୍ୟରେ ଆବିର୍ଭୂତ ହୋଇଥିବାରୁ ଏବଂ ଉପେନ୍ଦ୍ର ଭଞ୍ଜ ପ୍ରାୟ ଖ୍ରୀ ୧୬୮୦—୧୭୨୦ ମଧ୍ୟରେ ଜୀବିତ ଥିବାରୁ ଓ ଭଞ୍ଜଙ୍କର ବହୁ ପୂର୍ବବର୍ତ୍ତୀ ଶ୍ରୀହର୍ଷଙ୍କ ଶ୍ରେଷ୍ଠ କାବ୍ୟ ନୈଷଧର ବହୁଳ ପ୍ରଚଳନ ଏ ଦେଶରେ ଥିବାରୁ ଭଞ୍ଜଙ୍କ ଉପରେ ତାଙ୍କର ଅପ୍ରତିହତ ପ୍ରଭାବ ପରିଦୃଷ୍ଟ ହୁଏ । ଅଧ୍ୟାପକ ବ୍ରହ୍ମାଙ୍କ ସମ୍ପାଦନାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ତ୍ରୈମାସିକ ମୁଖପତ୍ର କୋଣାର୍କ ପ୍ରଥମ ବର୍ଷ ୧ମ ସଂଖ୍ୟାରେ ମହାକବି ଶ୍ରୀହର୍ଷଙ୍କ କୃତ 'ନୈଷଧ ଚରିତର ସମୀକ୍ଷା' ଶୀର୍ଷକ ପ୍ରବନ୍ଧରେ ଶ୍ରୀ କେଦାରନାଥ ମହାପାତ୍ର ନୈଷଧକାର ଶ୍ରୀହର୍ଷ ଗଞ୍ଜାମର ଋଷିକୂଲ୍ୟା ନଦୀ ଉପତ୍ୟକାରେ ତତ୍କାଳୀନ ନନ୍ଦବଂଶୀୟ ରାଜାଙ୍କ ପୃଷ୍ଠପୋଷକତାରେ 'ନୈଷଧୀୟ ଚରିତମ୍' ଲେଖିଥିବା ଅନୁମାନ କରନ୍ତି । ତେଣୁ ଏ କଥା ଯଦି ସତ୍ୟ ହୋଇଥାଏ ତେବେ ନୈଷଧକାର ଶ୍ରୀହର୍ଷଙ୍କ ପ୍ରଭାବ ଭଞ୍ଜଙ୍କ ଉପରେ ଯେ ଅତ୍ୟନ୍ତ ପରିମାଣରେ ପଡ଼ିବା ସ୍ୱାଭାବିକ ଏଥିରେ ଦ୍ୱିମତର କୌଣସି କାରଣ ନାହିଁ । ପୁଣି ନୈଷଧର ରଚନା ପରିପାଟୀ ଓ ଲୋକପ୍ରିୟତା ମଧ୍ୟ ଭଞ୍ଜ କବିଙ୍କୁ ପ୍ରବୋଧିତ କରିଥିବ ତାଦୃଶ କାବ୍ୟ ରଚନାରେ । ତେଣୁ ସେ ତାଙ୍କର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ୧୧ଶ ଛାନ୍ଦ ପ୍ରାନ୍ତରେ କହିଛନ୍ତି—

'ଏ ତ ପରକୃତ କାବ୍ୟ ଗ୍ରନ୍ଥ ପ୍ରାନ୍ତ ସତ ।
ଦୃଷ୍ଟି ଦୃଷ୍ଟାନ୍ତର ଏଥି ଅଛୁ ବିଶେଷତ ।

ଯେନ ନୈଷଧ ପରଯେ,
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରଏ ।'

ଏତଦ୍ୱାରା ଉପେନ୍ଦ୍ରଭଞ୍ଜଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ହେଉଛି ଯେ, ନୈଷଧ ଯେଉଁପରି ବୁଧ ହଂସକୋଳ ସର ରୂପେ ଖ୍ୟାତି ଲାଭ କରିଥିଲା ତାଙ୍କର କାବ୍ୟ କବିତା ମଧ୍ୟ ଠିକ୍ ସେହିପରି ବିଜ୍ଞଜନମାନଙ୍କ ଆଦରର ସାମଗ୍ରୀ ହେଉ । ଅତଏବ ତାଙ୍କର ଅନ୍ୟତମ ଶ୍ରେଷ୍ଠ କୃତି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'କୁ ସେ ନୈଷଧ କାବ୍ୟର ଅନୁସରଣରେ ରଚନା କରି ତାର ପ୍ରଥମ ଛାନ୍ଦରେ କହିଛନ୍ତି—

'ସୁରଭରେ ମୋହିତ ମାନସ ହେବେ ଭବ୍ୟେ
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ହେ ।

ରସିକ ଭ୍ରମରେ ହେବେ ରସ ଯେନ ବଣ
ନିର୍ଗୁଣେ ଯେନଲେ ନ ଯେନଲେ ଅଛୁ କସ ହେ' ।

(କୋ:ବ୍ର:ସୁ:—୧।୭୧-୭୨)

ଏଠାରେ କବିସମ୍ରାଟ ଭଞ୍ଜ ନୈଷଧକାର ଯେପରି ତାଙ୍କର କାବ୍ୟର ପ୍ରାରମ୍ଭରେ 'ତଥା ଦ୍ରବନ୍ତେ ନ ବୁଧଃ ସୁଧାମପି' କହି ତାଙ୍କର ଗ୍ରାହକ ବାଛି ଦେଇଛନ୍ତି, ଠିକ୍ ସେହିପରି 'ରସିକ ଭ୍ରମରେ ହେବେ ରସ ଯେନ ବଣ' ଇତ୍ୟାଦି କହି ନିଜ କାବ୍ୟର ଗ୍ରାହକ ବାଛିଦେବା ସଙ୍ଗେ ସଙ୍ଗେ ଗୁଣହୀନ ବ୍ୟକ୍ତିମାନଙ୍କ ନିନ୍ଦା ପ୍ରତି ଭ୍ରୂକ୍ଷେପ କରି ନାହାନ୍ତି । କାବ୍ୟ ପ୍ରଣୟନର ନିୟମ ଅନୁସାରେ 'ଦୁଷ୍ଟନିନ୍ଦା ଖଳାଦୀନାଂ ସତାଂ ଚ ଗୁଣ କୀର୍ତ୍ତନମ୍'ର ପାରମ୍ପରିକ ପ୍ରଚଳିତ ରୀତି ଅନୁସାରେ ଯେଉଁପରି କାବ୍ୟର ଭଲ ମନ୍ଦ ବିଚାର କରିବା ଶକ୍ତି ସମ୍ପନ୍ନ ବ୍ୟକ୍ତିମାନେ ହିଁ ତାଙ୍କର କାବ୍ୟ ପଢ଼ିବାକୁ ଯୋଗ୍ୟ ବୋଲି କାଳିଦାସ 'ରଘୁବଂଶ' କାବ୍ୟରେ ଲେଖି ଯାଇଛନ୍ତି—

'ତଂ ସନ୍ତଃ ଶ୍ରୋତୁମର୍ହନ୍ତି ସଦସଦ୍ ବ୍ୟକ୍ତି ହେତବଃ ।
ହେମ୍ନଃ ସଂଲକ୍ଷ୍ୟତେ ହ୍ୟଗ୍ନୌ ବିଶୁଦ୍ଧିଃ ଶାମିକାପିବା ॥'

ଠିକ୍ ସେହିପରି କବିବର ଭଞ୍ଜ ମଧ୍ୟ ସ୍ୱକାବ୍ୟଗୁଡ଼ିକରେ ସୂଚନା ଦେଇଛନ୍ତି । ତେଣୁ ତାଙ୍କର 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ଦ୍ୱାଦଶ ଛାନ୍ଦ ଆରମ୍ଭରେ ସେ କହିଛନ୍ତି —

ଯେ ଜାଣିଲେ ଏ କଥା ପ୍ରସଙ୍ଗ
ତାଙ୍କ ଛଉ କାର୍ଣ୍ଣି ପୂରିଲେ ସଙ୍ଗ ।

ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ସେହି ହେବ ଏ ମୋ ଛାନ୍ଦ ।

ପୁଣି ସେ କହିଛନ୍ତି—

ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ
ଯେତୁ ଜାଣେ ଅଳଙ୍କାର ଲକ୍ଷଣ ।

ସେହି କରୁ ଏ ଛାନ୍ଦ ବିବେଚନା-ଇତ୍ୟାଦି ।

(କୋ:ବ୍ର:ସୁ:-୩।୧)

କିନ୍ତୁ କବିଗୁରୁ ଭଞ୍ଜ ଉପରୋକ୍ତ ଲକ୍ଷଣମାନଙ୍କ ମଧ୍ୟରୁ ସର୍ବୋପରି ସହୃଦ ଗୁଣ ସମ୍ପନ୍ନ ଗ୍ରାହକ ବାଞ୍ଛିଛନ୍ତି । କାରଣ ଗ୍ରାହକ ଅହୃଦ ହେଲେ କାବ୍ୟର ରସାସ୍ୱାଦନ କରିବାରୁ ବଞ୍ଚିତ ହେବ । ତେଣୁ ସେ କହିଛନ୍ତି—

ଶ୍ରବଣ ଅବଧାନ ଜାଣିଥିଲେ,
ଜାଣି କସ ହେବ ସହୃଦ ହେଲେ ।

ବାସ୍ତବରେ ସବୁ କାଳରେ ସବୁ ଯୁଗରେ କବି ସାଧାରଣତଃ ରସିକ ଗ୍ରାହକ ବାଞ୍ଛିଥାଏ । ନୈଷଧକାର ମଧ୍ୟ ତାଙ୍କ କାବ୍ୟର ୨୨ଶ ସର୍ଗ ୧୫୮ ଶ୍ଲୋକରେ ଉପର୍ଯ୍ୟୁକ୍ତ ପ୍ରକାରେ ତାଙ୍କର ଭାବ ବ୍ୟକ୍ତ କରିଛନ୍ତି

ତେଣୁ ଉପରୋକ୍ତ ବିଭିନ୍ନ ଉଦାହରଣରୁ ଜଣାଗଲା ଯେ ନୈଷଧକାର ଯେଉଁପରି ପଣ୍ଡିତ ତଥା ଗୁଣଗ୍ରାହୀମାନଙ୍କ ନିମିତ୍ତ ନୈଷଧ କାବ୍ୟ ରଚନା କରି ସେମାନଙ୍କ ମହଲରେ ଅଶେଷ ଆଦୃତ ହେଲେ । ଆମର କବି ସମ୍ରାଟ୍ ଭଞ୍ଜ ମଧ୍ୟ ତାହାଙ୍କ ରୀତି ଅନୁସରଣ କରି ବିଦଗ୍ଧଜନମାନଙ୍କ ନିମିତ୍ତ କେତେକ କାବ୍ୟ ପ୍ରଣୟନ କରିଗଲେ । ଉକ୍ତ କାବ୍ୟଗୁଡିକ ମଧ୍ୟରେ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ରଚନା ଶୈଳୀ, ବର୍ଣ୍ଣନା ଚାତୁରୀ ତଥା ବିଷୟବସ୍ତୁର ସନ୍ନିବେଶନ ଓ ରସ ପରିବେଷଣ ଆଦି ସବୁ ଦୃଷ୍ଟିରୁ ଭଞ୍ଜୀୟ ପାଣ୍ଡିତ୍ୟ ପ୍ରକର୍ଷ ତଥା ରଚନା ପାଟବତାର ପରିଚୟ ପ୍ରଦାନ କରେ । ତେଣୁ ଉଭୟଙ୍କ ତୁଳନା ଆଜଯାଏ ହୋଇ ନ ଥିଲେ ସୁଦ୍ଧା ତୁଳନା କରିବା ଅସମୀଚୀନ ନୁହେଁ ।

## ଉଭୟ କବି ଐଶୀ ଶକ୍ତି ସମ୍ପନ୍ନ—

ଅନନ୍ୟ ସାଧାରଣ ତଥା ଅଲୌକିକ ସାମାନ୍ୟ ପ୍ରତିଭାର ପରିସ୍ଫୁରଣ ଐଶୀ ଶକ୍ତି ବିନା ଅସମ୍ଭବ । ପ୍ରାଚୀନ ସଂସ୍କୃତ ସାହିତ୍ୟରୁ ପ୍ରାକୃତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହାର ଉଦାହରଣ ବହୁତ ପରିମାଣରେ ଦୃଷ୍ଟିଗୋଚର ହୁଏ । ସରସ୍ୱତୀଙ୍କ କୃପାରୁ କାଳିଦାସ, ଦେବୀ କୃପାରୁ ସାରଳା ଦାସ ଆଦି ପ୍ରତିଭାବାନ୍ କବି ହେଲାପରି ଚିନ୍ତାମଣି ଓ ରାମତାରକ ମନ୍ତ୍ର ସିଦ୍ଧ କବି ଶ୍ରୀହର୍ଷ ଓ ଉପେନ୍ଦ୍ର ଭଞ୍ଜ ମଧ୍ୟ ଯଥାକ୍ରମେ ମହାକବି ଆସନ ଅଳଂକୃତ କରିଯାଇଛନ୍ତି । ଶ୍ରୀହର୍ଷ ତାଙ୍କର କାବ୍ୟର ବହୁ ସ୍ଥଳରେ ଚିନ୍ତାମଣି ମନ୍ତ୍ର ପ୍ରଭାବରେ ତାଙ୍କ କବିତ୍ୱ ଶକ୍ତିର ପରିସ୍ଫୁରଣ ହୋଇଛି ବୋଲି ଯେପରି 'ଚିନ୍ତାମଣି ମନ୍ତ୍ର ଚିନ୍ତନ ଫଳେ ଶୃଙ୍ଗାର ଭଙ୍ଗ୍ୟା ମହା କାବ୍ୟେ ଚାରୁଣି ନୈଷଧୀୟ ଚରିତେ ସର୍ଗୋଽୟମାଦିର୍ଗତଃ' ଓ 'ଯେନାସ୍ୟଂ ହୃଦୟେ ସ୍ଥିତଃ ସୁକୃତିନା ମନ୍ତ୍ରସ୍ୟ ଚିନ୍ତାମଣିଃ' ଇତ୍ୟାଦି କହିଛନ୍ତି । ମହାକବି ଭଞ୍ଜ ମଧ୍ୟ ତାଙ୍କ କାବ୍ୟର ବିଭିନ୍ନ ସ୍ଥଳରେ ରାମତାରକ ମନ୍ତ୍ର ପ୍ରସାଦରୁ ତାଙ୍କ କବିତ୍ୱ ଶକ୍ତିର ବିକାଶ ହୋଇଛି ବୋଲି ଘୋଷଣା କରିଛନ୍ତି । ବାସ୍ତବରେ ଭଞ୍ଜ ଯଦି ଅନ୍ୟ ଏକ ଐଶୀ ଶକ୍ତି ସମ୍ପନ୍ନ କବି ନ ହୋଇଥାନ୍ତେ ତେବେ ତାଦୃଶ ଏକ ଐଶୀଶକ୍ତି ସମ୍ପନ୍ନ କବିଙ୍କର ସମକକ୍ଷ ହୋଇପାରି ନ ଥାନ୍ତେ ।

## ଭାବ ସାମ୍ୟ ଓ ପରୋକ୍ଷ ପ୍ରଭାବ—

ଭଞ୍ଜୀୟ କାଳ୍ପନିକ କାବ୍ୟ-କବିତାର ବିଷୟ ସଯୋଜନା ପ୍ରାୟଶଃ ଏକ ପ୍ରକାର ବୋଲି କୁହାଯାଉଥିଲେ ସୁଦ୍ଧା, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସମସ୍ତଙ୍କଠାରୁ ଭିନ୍ନ ଆକାର ଧାରଣ କରି ଭଞ୍ଜୀୟ କାବ୍ୟ କଳାର ଶ୍ରୀ ସମ୍ପାଦନ କରିଛି। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଦ୍ୱିତୀୟ ଛାନ୍ଦରେ ବ୍ରହ୍ମାଙ୍କ ସହ ରାଜାଙ୍କ ସାକ୍ଷାତ ପାଇଁ କରିଯାଇଥିବା ହଂସର କଳ୍ପନା ଭଞ୍ଜଙ୍କ ଉପରେ ନୈଷଧୀୟ ପରୋକ୍ଷ ପ୍ରଭାବ ବୋଲି କୁହାଯାଇ ପାରେ। ଏତଦ୍‌ବ୍ୟତୀତ ସ୍ତ୍ରୀ ବର୍ଣ୍ଣନା, ବିଯୋଗିନୀ ବିଳାପ ଆଦିରେ ବର୍ଣ୍ଣନା ସାମ୍ୟ ସହ ଅନେକସ୍ଥ ଭାବ ସାମ୍ୟତା ପରିଲକ୍ଷିତ ହୁଏ।

## ବର୍ଣ୍ଣନା ସାମ୍ୟ—

ନୈଷଧୀୟ ବର୍ଣ୍ଣନାବୈଭବ ସମଗ୍ର ସଂସ୍କୃତ ସାହିତ୍ୟରେ ଅନ୍ୟ କୌଣସିଠାରେ ପରିଦୃଷ୍ଟ ହୁଏ ନାହିଁ। ଗୋଟିଏ ସାଧାରଣ ବିଷୟକୁ ପ୍ରକାରନ୍ତର ବର୍ଣ୍ଣନା ହେଉଛି ନୈଷଧକାରଙ୍କର ଅନ୍ୟତମ ବୈଶିଷ୍ଟ୍ୟ। ଉଦାହରଣ ସ୍ୱରୂପ ନୈଷଧର ତୃତୀୟ ସର୍ଗର ଗୋଟିଏ ଶ୍ଳୋକ ଦିଆଯାଇ ପାରେ—

'ସଙ୍ଖ୍ୟାବିଧ୍ୟ ନଃ ସୃଧ୍‌ଜଗତ୍ତ୍ୟା ବର୍ଗାନ୍‌
ବୈତ୍ୟାଶ୍ରୟନ୍ତୀବ୍‌ଭଜନାଥ୍ୟନ୍ତୁ ଗୌ।

ତସ୍ୟାତ୍କୁଚନ୍ଦ୍ରାଦ୍ୱସରୋଜ-ପୀଠାତ୍
ଧାତୁର୍ବିଲଙ୍ଘ୍ୟଂ ରମତେ ରମାସ୍ଥାନ୍ ॥

(ସର୍ଗ-୩ଶ୍ଳୋ-୩୪)

ଯେତେବେଳେ ଦମୟନ୍ତୀ ହଂସକୁ ନଳ ମୁଖର ସୌନ୍ଦର୍ଯ୍ୟାତିଶଯ୍ୟ ବର୍ଣ୍ଣନା କରିବାକୁ କହିଲେ, ସେତେବେଳେ ହଂସ କହିଲା—"ଆମେ ଯେତେବେଳେ ଆମର ପକ୍ଷିରାଜ ଗରୁଡ଼ ଯେ କି କ୍ଷୀରବ୍‌ଧିରେ ଶୟନ କରିଥିବା ଭଗବାନ ବିଷ୍ଣୁଙ୍କ ନିକଟରେ ଆଅନ୍ତି, ତାଙ୍କ ପାଖକୁ ଯାଇ

ଯେତେବେଳେ ଭଗବାନ ବିଷ୍ଣୁ ଆମକୁ ନିଜମୁଖର ସ୍ତୁତି କରିବାକୁ ଚାହାନ୍ତି ଏବଂ ଆମେ ନିଜମୁଖର ସ୍ତୁତି କଲେ ସେ ରମାଙ୍କ ସହ ରମଣ କରନ୍ତି । ଏଠାରେ ଦମୟନ୍ତୀ ହଂସକୁ ନିଜମୁଖର ସୌନ୍ଦର୍ଯ୍ୟାତିଶଯ୍ୟ ବର୍ଣ୍ଣନା କରିବାକୁ କହିଥିଲା ବେଳେ ହଂସର ଏତାଦୃଶ ପଦବର୍ଷ ଉତ୍ତର ଅଭିନବ ବୈଚିତ୍ର୍ୟପୂର୍ଣ୍ଣ । ଏହାର ତାତ୍ପର୍ଯ୍ୟ ହେଉଛି ଭଗବାନ ବିଷ୍ଣୁ କ୍ଷୀରାବ୍ଧିରେ ଅନନ୍ତଶୟନ କରିଥିଲା ବେଳେ ତାଙ୍କ ନାଭିରୁ ବାହାରିଥିବା ପଦ୍ମ ଉପରେ ଚତୁର୍ମୁଖ ବ୍ରହ୍ମା ବସି ଚାରିଆଡ଼କୁ ଅନାଇ ବେଦପାଠ କରୁଥାନ୍ତି ଏବଂ ଲକ୍ଷ୍ମୀ ପାଦ ସେବାରେ ନିରତ ଥାଆନ୍ତି । କିନ୍ତୁ ବ୍ରହ୍ମାଙ୍କ ପରି ବୃଦ୍ଧବୟସ୍କ ବ୍ୟକ୍ତି ସବୁବେଳେ ଉପସ୍ଥିତ ଥାଇ ପୁଣି ବଡ଼ ପାଟିରେ ବେଦପାଠ କରୁଥିବାରୁ ଭଗବାନ୍ ବିଷ୍ଣୁଙ୍କ ଦାମ୍ପତ୍ୟ ଜୀବନ ସୁଖାବହ ହୁଏ ନାହିଁ । ବ୍ରହ୍ମାଙ୍କ ତୁଳନାରେ ବିଷ୍ଣୁ ତରୁଣ । ତରୁଣ ମନ ସର୍ବଦା ତରୁଣୀରତ ହେବା ସ୍ୱାଭାବିକ ଏବଂ ସେ ସର୍ବଦା ବ୍ରହ୍ମାଙ୍କ ଅଜ୍ଞାତସାରରେ ତରୁଣୀରତ ହେବାକୁ ଇଚ୍ଛା କରିବା ସ୍ୱାଭାବିକ ସିଦ୍ଧ । ତେଣୁ ଭଗବାନ୍ ବିଷ୍ଣୁ ଏଠାରେ ଚତୁରତା ସହ ହଂସକୁ ନିଜ ମୁଖ ବର୍ଣ୍ଣନା କରିବାକୁ କହିବାରୁ ହଂସ ଏତେ ସୁନ୍ଦର ଭାବରେ ନିଜମୁଖର ଚିତ୍ରଣ କଲା ଯେ ବିଷ୍ଣୁଙ୍କ ନାଭିର ପଦ୍ମ ଯେ କି ଜଗତରେ ନିଜକୁ ଅତି ସୁନ୍ଦର ବୋଲି ଭାବୁଥିଲା, ତାଠାରୁ ଅଧିକ ସୁନ୍ଦର ନିଜମୁଖର ବର୍ଣ୍ଣନା ଶୁଣି ତା ମୁଖ ମଳିନତା ପ୍ରାପ୍ତ ହେଲା । ପଦ୍ମର ମୁଖ ମଳିନତାପ୍ରାପ୍ତ ହେବାରୁ ସେ ସଙ୍କୁଚିତ ହୋଇଯାଆନ୍ତେ ତଦୁପରିସ୍ଥ ଆସୀନ ବ୍ରହ୍ମା ତା'ର ଭିତରେ ଲୁଚିଗଲେ । ଇତ୍ୟବସରରେ ବ୍ରହ୍ମାଙ୍କ ଅନୁପସ୍ଥିତି ଦେଖି ଭଗବାନ ବିଷ୍ଣୁ ଲକ୍ଷ୍ମୀଙ୍କ ସହ କପୂତଭାବ ଅତିବାହିତ କରି ଦାମ୍ପତ୍ୟ ଜୀବନକୁ ମଧୁମୟ କଲେ ।

ଏଠାରେ ଗୋଟିଏ ସାଧାରଣ କଥାକୁ ବର୍ଣ୍ଣନା କରିବାକୁ ଯାଇ ଶ୍ରୀହର୍ଷ ଯେଉଁପରି କଳ୍ପନାର ଆଶ୍ରୟ ନେଇ ଅଦ୍ଭୁତ ବୈଦୁଷ୍ୟ ପ୍ରଦର୍ଶନ କରିଛନ୍ତି, ତା'ର ଛାୟା ମଧ୍ୟ ପଡ଼ିଛି ଭଞ୍ଜଙ୍କ ଉପରେ । ତେଣୁ ସେ ସଂପୂର୍ଣ୍ଣ ଅନୁକରଣ ନ କରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ବର୍ଣ୍ଣନା ବେଳେ ଏମ ଛନ୍ଦରେ କହିଛନ୍ତି—

'ମୁଖ ଛବି ଧ୍ୟାନରେ ଲୀନ, ସଙ୍କୋଚେ ନଳିନ ମଳିନ ।'

ଅନେକ ସ୍ଥଳରେ ଭଞ୍ଜୀୟ ଶ୍ଳେଷ ନୈଷଧକାରଙ୍କୁ ମଧ୍ୟ ଅତିକ୍ରମ କରିଛି । ଦମୟନ୍ତୀର ମୁଖ ବର୍ଣ୍ଣନାବେଳେ ଦ୍ୱିତୀୟ ସର୍ଗରେ ନୈଷଧକାର କହିଛନ୍ତି—

"ହୃତସାରମିବେନ୍ଦୁମଣ୍ଡଳଂ ଦମୟନ୍ତୀ ବଦନାୟ ବେଧସା ।
କୃତମଧ୍ୟବିଲଂ ବିଲୋକ୍ୟତେ ଧୃତଗମ୍ଭୀର ଖନୀ ଖନୀଲିମ୍" ।
(୨।୨୫)

ଅର୍ଥାତ୍ ଦମୟନ୍ତୀଙ୍କର ମୁଖମଣ୍ଡଳ ଗଠନ କରିବାବେଳେ ବିଧାତା ଚନ୍ଦ୍ରରୁ ସାର ହରଣ କରି ନେଇଯାଇଥିବାରୁ ଚନ୍ଦ୍ର ମଧ୍ୟରେ ଗୋଟିଏ ଗର୍ତ୍ତ ହୋଇଯାଇ ତାହା କଳଙ୍କ ରୂପେ ଦେଖାଯାଉଛି ।

ଏଠାରେ ନୈଷଧକାର ଚନ୍ଦ୍ରରୁ ସାର ନେଇ ଦମୟନ୍ତୀର ମୁଖ ନିର୍ମିତ ବୋଲି କହୁଥିଲାବେଳେ ଭଞ୍ଜ ଚନ୍ଦ୍ର ତା ମୁଖ ସହ ସମାନ ନୁହେଁ ବୋଲି ପ୍ରତିପାଦନ କରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ କହିଛନ୍ତି—

'ସମ୍ପୂର୍ଣ୍ଣ ବିଧୁ ସମାନ ଧୂଆଇ
ସୁଧାକଳା ପାଇ ନୋହେ ଭ୍ରମର,
ଏଣୁକି ସୁଧାକର କଳାନିଧି
ପର୍ଯ୍ୟାୟେ କଲେ ଅନାୟକେ ସିଦ୍ଧି' । (୭।୧୨)

ଏଠାରେ ଭଞ୍ଜୀୟ କଳ୍ପନା ଶ୍ଳେଷ ଲକ୍ଷ୍ୟ କରିବାବେଳେ ତାଙ୍କର ଶବ୍ଦଜ୍ଞାନ ମଧ୍ୟ ଦ୍ରଷ୍ଟବ୍ୟ । ତେଣୁ ଭଞ୍ଜ କହିଛନ୍ତି ଅନାୟକ ବୋଧହୁଏ ସୁଧାକର ନାମ ସଙ୍ଗେ ସଙ୍ଗେ କଳାନିଧି ନାମ ତେଣୁକରି ଏକ ପର୍ଯ୍ୟାୟାନ୍ତର୍ଭୁକ୍ତ କୋଷଗ୍ରନ୍ଥମାନଙ୍କରେ କରିଛନ୍ତି । ପୁଣି ନୈଷଧରେ ଦମୟନ୍ତୀର ମୁଖ ସହ ପଦ୍ମର ତୁଳନା କରି କୁହାଯାଇଛି—

"ସୁଷମା ବିଷୟେ ପରୀକ୍ଷଣେ ନିଖିଳଂ ପଦ୍ମମଭଞ୍ଜି ତଦାନନାତ୍ ।
ଅଧୁନାପି ନ ଭଙ୍ଗ ଲକ୍ଷଣଂ ସଲିଳୋନ୍ମଜ୍ଜନ ମୁଜ୍ଝତି ସ୍ଫୁଟଂ" ।
(ନୈ: ୨।୨୭)

ଏଠାରେ ପଦ୍ମ ହାରିଗଲା କହି ମୁଖର ବର୍ଣ୍ଣନା କରିବାକୁ ନୈଷଧକାର ଅକ୍ଷମ ହୋଇଛନ୍ତି । କିନ୍ତୁ ଆମର କବି ସମ୍ରାଟ ଭଞ୍ଜ ଅଶେଷ ବିଦଗ୍ଧତାର ସହ ବର୍ଣ୍ଣନା କରିଛନ୍ତି—

"ଇବକର କଞ୍ଜ ଛବି ବଦନ ଦୁଇଗୁଣ କରିବାକି ସଦନ,
କମଳ ଦର୍ପଣ ଚନ୍ଦ୍ରବଦନା ବୋଇଲେ ତେବେ ହେବ ସମ୍ଭାବନା,
ଏ ଉପଲକ୍ଷେ ଛଦ୍ମ ଯେ,
କେବଳ ସ୍ତୁତି ଥିଲାକୁ ଚରଣ ଅଗରେ ପଡ଼ିଛି ପଦ୍ମ ଯେ"।

ଏଠାରେ କବି ମୁଖ ସହ ତୁଳନା କରିବା ପାଇଁ ଇବକର ଦ୍ୱାରା ପ୍ରସ୍ଫୁଟିତ ପଦ୍ମ ଯୋଗ୍ୟ ନୁହେଁ ବୋଲି କହିଛନ୍ତି । କାରଣ ସେଠାରେ ସୁବାସ ଥିଲେ ସ୍ୱଚ୍ଛ ଝଳ ଓ ଆହ୍ଲାଦ ଏ ଦୁଇ ଗୁଣ ନାହିଁ । ତେଣୁ ଜଣ ମୁଖ ସହ ତୁଳନା କରିବାକୁ ହେଲେ କମଳ-ଦର୍ପଣ-ଚନ୍ଦ୍ରବଦନା କହିଲେ ସୁବାସ, ଝଳ ଓ ଆହ୍ଲାଦ ଏ ତିନିଗୁଣ ରହିବ । ତା'ପରେ ମୁଖ ସହ ତୁଳନା କରିପାରିଲା ପରେ କବି ନୈଷଧୀୟ ପ୍ରଭାବକୁ ଏଡ଼ାଇ ନପାରି କହୁଛନ୍ତି ଏ ମଧ୍ୟ ମିଥ୍ୟା । କାରଣ ପଦ୍ମ ହାରିଯିବାରୁ ତା'ର (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର) ଚରଣ ଆଗରେ ପଡ଼ିଛି । ସୁଭଦ୍ରା ପରିଣୟରେ କିନ୍ତୁ ଠିକ ଉପର୍ଯ୍ୟୁକ୍ତ ପ୍ରକାରେ ବର୍ଣ୍ଣନା କରି କବି ଲେଖିଛନ୍ତି—

'ସଞ୍ଜରତ୍ନ ସ୍ମର ହୋଇଲା ଶଙ୍କର
ପଦ୍ମ ଯେ ହାରିଲା ମୁଖେ,
ସର୍ବତୋ ମୁଖେ ବୁଡ଼ାଇ କି ତା
ଦୋଷ ଛଡ଼ାଇ ବସିଲା ସୁଖେ ।'

ଠିକ୍ ସେହିପରି ନୈଷଧର ୨ୟ ସର୍ଗ ୨୮ ଶ୍ଳୋକର 'ଧନୁଷୀ ରତି ପଞ୍ଚବାଣୟୋ ରୁଦିତେ ବିଶ୍ୱ ଜୟାୟ ତଦ୍ଭ୍ରୁବୌ' ସହ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀର ୭ମ ଛାନ୍ଦ ୯ମ ପଦର 'ଅର୍ଜ୍ଜୁନ ପଦଶ୍ରୀ' ଇତ୍ୟାଦି ଶ୍ଳୋକ ତୁଳନୀୟ ।

ଠିକ ସେହିପରି ଅନ୍ୟାନ୍ୟ ଭଞ୍ଜୀୟ କାବ୍ୟରେ ମଧ୍ୟ ନୈଷଧୀୟ ପ୍ରଭାବର ସ୍ପଷ୍ଟ ଆଲେଖ୍ୟ ପରିଦୃଷ୍ଟ ହୁଏ, ଉଦାହରଣ ସ୍ୱରୂପ, ସୁଭଦ୍ରା ପରିଣୟରେ କେଶ ବର୍ଣ୍ଣନାର—

'ସୁକୁନ୍ତଳା ସୁକୁନ୍ତଳ ମାଳକୁଟିଳ ଗହଳ
ଚିକ୍କଣ ଲମ୍ବ ଚଞ୍ଚଳ ବାସ ନିବାସ
ସୁହୃଦ ମୁଢ଼ ବରହୀ ପୁଚ୍ଛ ଲକ୍ଷ୍ୟ ହେବା ପାଇଁ
ଗଳଥା ପାଇଲା ଯାହିଁ ନେତ୍ରକେଶ ପାଶ ।
ସେ ଚନ୍ଦ୍ର ଚନ୍ଦ୍ରିକା ପ୍ରମାଣ
ସମ୍ଭବ୍ୟ ହୋଇଲେ ପୁଣି ଉପମା ଗଣ ।'

ଏଠାରେ କବି ସମ୍ପୂର୍ଣ୍ଣ ନୈଷଧୀୟ ବର୍ଣ୍ଣନା —
'ଅସ୍ୟାଃ କଚାନାଂ ଶିଖିନଶ୍ଚ କିନ୍ତୁ ବିଧୁଂତୁଦାଗେ ଚମରେରଗାତ୍ରାନ୍
ତେନାପ୍ୟମେଭିଃ କମନୀୟ ପୁଚ୍ଛୈର୍ଗର୍ହାର୍ଦ୍ଧଦତ୍ତା ସ କମର୍ତ୍ତଚନ୍ଦ୍ରମ୍ ।'
(୭।୧୭)ର ଅନୁକରଣ କରିଛନ୍ତି ।

## ନୈଷଧୀୟ ଶୈଳୀ-ଯଥାର୍ଥ ଶବ୍ଦ ପ୍ରୟୋଗ —

ନୈଷଧୀୟ ଶୈଳୀର ଅନ୍ୟତମ ପ୍ରଧାନ ବୈଶିଷ୍ଟ୍ୟ ହେଉଛି 'ଯଥାର୍ଥ ଶବ୍ଦ ପ୍ରୟୋଗ' । ଗୋଟିଏ ଶବ୍ଦର ଗୋଟିଏ ଗୋଟିଏ ସ୍ଥାନରେ ଏପରି କୌଶଳପୂର୍ଣ୍ଣ ପ୍ରୟୋଗ ହୋଇଥାଏ ଯେ, ତାହା ବିଚାର କଲେ ନୈଷଧୀୟ ପ୍ରତିଭାରେ ଅବଶ୍ୟ ମୁଗ୍ଧ ହେବାକୁ ପଡ଼େ ।

ଉଦାହରଣ ସ୍ୱରୂପ ନୈଷଧର ୧ମ ସର୍ଗରେ ନଳଙ୍କର ରୂପ ବର୍ଣ୍ଣନା ବେଳେ କୁହାଯାଇଛି—

'ଅଧାରି ପଦ୍ମେଷୁ ତଦଙ୍ଘ୍ରିଣା ଘୃଣା ।
କ୍ୱ ତଚ୍ଛୟଚ୍ଛାୟ ଲବୋଽପି ପଲ୍ଲବେ ।'

ଏଠାରେ ନଳଙ୍କ ପାଦପଦ୍ମାରେ ଘୃଣାଭାବ ଧାରଣ କଲା । କାରଣ ପଦ୍ମ ଶବ୍ଦଟି ବ୍ୟୁତ୍ପତ୍ତି କଲେ ପଦର ମା (କାନ୍ତିପଣ୍ଡ) ଯାହାର ମା ସେ ହେଲା ପଦ୍ମ । ଏଠାରେ ପଦ ହେଉଛି ଉପମାନ ଏବଂ ପଦ୍ମ ହେଉଛି ଉପମେୟ । ଅତଏବ ପଦ୍ମ ନିଶ୍ଚୟ ପାଦଠାରୁ ନ୍ୟୂନ । କାରଣ ଉପମେୟକୁ ସଦାବେଳେ ଅଧିକ ଗୁଣସମ୍ପନ୍ନ ଉପମାନ ସହ ତୁଳନା କରି ଉପମେୟର ଉତ୍କର୍ଷତା ପ୍ରତିପାଦନ କରାଯାଇଥାଏ । ଉଦାହରଣ ସ୍ୱରୂପ,

ଚନ୍ଦ୍ରର ମୁଖ ଯାହାର ସେ ହେଲ ଚନ୍ଦ୍ରମୁଖ । ଏଠାରେ ଉପମାନ ଚନ୍ଦ୍ର ବସ୍ତୁଟି ଉପମେୟ ଅପେକ୍ଷା ଅଧିକ ଶୋଭାସମ୍ପନ୍ନ ବସ୍ତୁ, ତେଣୁ ତାହା ସହିତ ତୁଳନା କରି ମୁଖର ଉତ୍କର୍ଷତା ପ୍ରତିପାଦନ କରାଯାଇଛି । ତେଣୁ ନଳଙ୍କର ପାଦ, ତାହାର କାନ୍ତି ନେଇ ଚନ୍ଦ୍ର ଗଠିତ ହୋଇଥିବାରୁ ତାହାକୁ ଘୃଣା କଲା । ଠିକ୍ ସେହିମତ ପଙ୍କଜ ଶବ୍ଦଟିକୁ ପଦର କାନ୍ତିର ଲବମାତ୍ର ଯାହାଠାରେ ସେ ହେଲ ପଙ୍କଜ । ତେଣୁକରି କରପଙ୍କଜ କହିବା ଠିକ୍ ନୁହେଁ, ଯେହେତୁ ଅଧମାଙ୍ଗ ପାଦର ଲବମାତ୍ର କାନ୍ତି ନେଇ ଗଠିତ ପଙ୍କଜ ଉତ୍ତମାଙ୍ଗ ସହ ତୁଳନୀୟ ନୁହେ ।

ଠିକ୍ ସେହିପରି ଭଞ୍ଜୀୟ କାବ୍ୟକଳାର ବହୁ ସ୍ଥଳରେ ଏହିପରି ଯଥାର୍ଥ ଶବ୍ଦ ପ୍ରୟୋଗ ଦେଖାଯାଏ । ଉଦାହରଣ ସ୍ୱରୂପ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ୧ମ ଛାନ୍ଦ ଶେଷର ବନ୍ଦ୍ରକାନାଥ ଚରଣ ଦେଖନ୍ତୁ—

'ଧ୍ୟାନେ ସ୍ପରଷ କରନ୍ତେ ହୃଦୟ
ସ୍ପରଶ ମଣିରେ ନିର୍ମିତକାୟ ।'

ଏଠାରେ ସ୍ପର୍ଶ ମଣିରେ ନିର୍ମିତ ବନ୍ଦ୍ରନାରାୟଣଙ୍କୁ କବି ଧ୍ୟାନ କରୁଛନ୍ତି ହୃଦୟକୁ ସ୍ପର୍ଶ କରିବା ପାଇଁ । ଏଠାରେ ହୃଦୟ ଶବ୍ଦର ପ୍ରୟୋଗ ପାଣ୍ଡିତ୍ୟପୂର୍ଣ୍ଣ । କାରଣ ହୃଦୟ ଶବ୍ଦଟି (ହୃତ୍ × ଅୟ) ଅୟ ଯେ ଲୌହକୁ ହରଣକରେ ସେ, ବୋଲି ଅର୍ଥବାଚାରୁଛି । ଏଠାରେ କବି ବନ୍ଦ୍ରନାରାୟଣଙ୍କୁ ସ୍ପର୍ଶ ମଣିରେ ନିର୍ମିତକାୟ ବୋଲି କହିବା ଦ୍ୱାରା ସ୍ପର୍ଶମଣିର ଲୁହାକୁ ସୁନା କରିବା ଗୁଣ ସୂଚିତ ହେଉଛି । ଅତଏବ କବି ଧ୍ୟାନ ଦ୍ୱାରା ତାଙ୍କର ସ୍ପର୍ଶ ପାଇ ନିଜର ଅୟ ବା (ଲୌହ) ରୂପକ କଠିନ ତଥା ମଳିନ ଓ ଅସାର ହୃଦୟକୁ ସ୍ୱର୍ଣ୍ଣ ସଦୃଶ ନିର୍ମଳ । ଉଜ୍ଜ୍ୱଳ ଓ ସାର ସମ୍ପନ୍ନ କରିବାକୁ ଇଚ୍ଛା କରୁଛନ୍ତି । ଠିକ୍ ସେହିପରି ଲାବଣ୍ୟବତୀର 'ମଳୟ ଶିଖରେ ଶିଶିର ବୈଭବରେ ବହିଲାଣି ମନ୍ଦ ସମୀର'ରେ ସମୀରର ବିଶେଷଣ ରୂପେ ପ୍ରଯୁକ୍ତ ମନ୍ଦ ଶବ୍ଦ ଗଭୀର ପାଣ୍ଡିତ୍ୟ ପ୍ରସୂତ । ଏଠାରେ ମନ୍ଦ ଶବ୍ଦ ଧୀର ଅର୍ଥରେ ପ୍ରୟୋଗ କରାଯାଇଛି ଯେଉଁପରି ଗୀତ ଗୋବିନ୍ଦର 'ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ' ଇତ୍ୟାଦିରେ

ସମୀରର ବିଶେଷଣ ରୂପେ ଧୀର ଶବ୍ଦ ବ୍ୟବହୃତ । କିନ୍ତୁ ଭଞ୍ଜ ସମୀର ସ୍ଥାନରେ ଧୀର ଶବ୍ଦ ନବସାଇ ମନ୍ଦ ଶବ୍ଦ ବସାଇଛନ୍ତି, କାରଣ ମନ୍ଦ ଶବ୍ଦ ଖରାପ ଅର୍ଥବାଚକ । ତେଣୁ ଯେଉଁ ସମୀର (ମଳୟ ଶିଖରର ଶ୍ରୀ) ସ୍ନେହ କରୁଛି ସେ ନିଶ୍ଚୟ ମନ୍ଦ (ଖରାପ) ପଦବାଚ୍ୟ । କିନ୍ତୁ 'ଧୀର' ଶବ୍ଦ ଜୟଦେବ ପ୍ରୟୋଗ କରିଛନ୍ତି । କାରଣ ଧୀର (ପଣ୍ଡିତ, ବିଜ୍ଞ) ଲୋକ ନ ହେଲେ ଉତ୍ତମ ଭଗବଦ୍ ସାନ୍ନିଧ୍ୟ ଅନ୍ୟ ପକ୍ଷରେ କରିବା କଷ୍ଟକର ।

ଏତଦ୍ ବ୍ୟତୀତ ବିଭିନ୍ନ ଅଳଂକାର ପ୍ରୟୋଗରେ ମଧ୍ୟ ଭଞ୍ଜ ନୈଷଧକାରଙ୍କର ଅନୁସରଣ କରି ସର୍ବତ୍ର ସ୍ୱ ପ୍ରତିଭା ପ୍ରକର୍ଷତା ପ୍ରକଟନ କରିଯାଇଛନ୍ତି । ନୈଷଧର ୧୩ଶ ସର୍ଗର 'ପଞ୍ଚନଳୀ'ର ଶ୍ଳେଷ ବର୍ଣ୍ଣନାଠାରୁ ବଳିଯାଇ ଭଞ୍ଜ ଗୋଟିଏ ଗୋଟିଏ ଶବ୍ଦକୁ ଏକାଧିକ ଅର୍ଥରେ ପ୍ରୟୋଗ କରିଛନ୍ତି । ଏ ସମ୍ବନ୍ଧରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବିଂଶ ଛାନ୍ଦର ଶୁକ ସାରିକା କଥୋପକଥନ ଓ ପଞ୍ଚବିଂଶ ଛାନ୍ଦର ଏକାଧାରରେ ତିନି ଋତୁ ବର୍ଣ୍ଣନା ଦ୍ରଷ୍ଟବ୍ୟ । ବୈଦେହୀଶ ବିଳାସର ଆଦ୍ୟରେ ବର୍ଣ୍ଣିତ ମଙ୍ଗଳାଚରଣରୁ ବର୍ତ୍ତମାନ ଦଶ ପ୍ରକାର ଅର୍ଥ ବାହାରୁଛି । ଅବଶ୍ୟ ତାହା ବହୁତ ଆୟାସସାଧ୍ୟ: କାରଣ ଉଦାହରଣ ସ୍ୱରୂପ ତା'ର ପ୍ରଥମ ପଦରେ ଥିବା 'ବୈନତେୟ' ଶବ୍ଦଟି ବିଷ୍ଣୁଙ୍କ ପାଇଁ ଗରୁଡ଼ ଅର୍ଥରେ, ସୂର୍ଯ୍ୟଙ୍କ ପାଇଁ ଅରୁଣ ଅର୍ଥରେ, ଶିବଙ୍କ ପାଇଁ ବୈୟୁ (ଯମ) ବୋଲି ଅର୍ଥ କରାଯାଉଥିବା ବେଳେ ଅଗ୍ନି ଅର୍ଥରେ ଲଗାଇବାକୁ ହେଲେ 'ଊ ପ୍ରାଣଃ ଶକ୍ତିଃ ନ ପ୍ରେରଣା ଅତଃ ଊନ ପ୍ରାଣ-ଶକ୍ତି-ପ୍ରେରଣା ତସ୍ୟ ଭାବଃ ଊନତା ତୟା ପ୍ରତ୍ୟକ୍ଷୀଭୂତଃ ବୈନତେୟଃ ଅଗ୍ନି ପ୍ରକାଶକଃ' ଭାବରେ ଅର୍ଥ କରିବାକୁ ହେବ ।

ଅର୍ଥ ଗୌରବ ସହ ଭାବ, ଭାଷା, ଶୈଳୀ, ରସ — ସମସ୍ତ ଦିଗରୁ ଭଞ୍ଜୀୟ ପ୍ରତିଭାର ବିଶ୍ଳେଷଣ କଲାଗଲେ ମଧ୍ୟ ଭଞ୍ଜ ଯେ ନିଶ୍ଚୟ ଶ୍ରୀହର୍ଷଙ୍କ ଠରୁ ସାହିତ୍ୟ ଜଗତରେ ଶୀର୍ଷସ୍ଥାନ ଲାଭ କରିବେ ଏଥିରେ ସନ୍ଦେହ ନାହିଁ । ତେଣୁକର ଭଞ୍ଜ ସମ୍ବନ୍ଧରେ ଆମ ଦେଶରେ ଭାଷଣ ଇତ୍ୟାଦିର ବହୁଳ

ସମଗ୍ର ଅପବ୍ୟାଖ୍ୟା ନ କରି ତାହାଙ୍କ ପ୍ରତିଭାର ବିଭିନ୍ନ ଦିଗ ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ ସେହି ସମ୍ରାଟ ପ୍ରତିଭାର ବାସ୍ତବ ବିଶ୍ଳେଷଣ କରି ତାଙ୍କୁ ଓଡ଼ିଶା ବାହାରେ ପରିଚିତ କରାଇଲେ, ଭଞ୍ଜୀୟ ପ୍ରତିଭା ସାରସ୍ୱତର ଉପଯୁକ୍ତ ଅଭ୍ୟର୍ଥନା ହେବ ଏବଂ କବିସମ୍ରାଟ ଭଞ୍ଜଙ୍କ ସାହିତ୍ୟର ଉପଯୁକ୍ତ ଅନୁଶୀଳନ ସମ୍ଭବ ହେବ ।



# ଉପେନ୍ଦ୍ର ଭଞ୍ଜଙ୍କ କେତେକ ବିଶିଷ୍ଟ କୃତିର ଆନୁପୂର୍ବିକତା

ଅଧ୍ୟାପକ ଡକ୍ଟର କିଶୋରଚନ୍ଦ୍ର ମିଶ୍ର
ଅଧ୍ୟାପକ :- ଓଡ଼ିଆ ଭାଷା ସାହିତ୍ୟ ବିଭାଗ

ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସଂସ୍କୃତିର ଏକ ଅବିସ୍ମରଣୀୟ ବ୍ୟକ୍ତି । ଆଧୁନିକ କାବ୍ୟାଦର୍ଶର ମାନଦଣ୍ଡରେ ଉପେନ୍ଦ୍ର ବିବାଦାସ୍ପଦ ହେଲେ ମଧ୍ୟ ତାଙ୍କ ପ୍ରତିଭାକୁ କେହି ସାହସର ସହିତ ଅସ୍ୱୀକାର କରିପାରି ନାହାନ୍ତି । ଏହି ମହାନ୍ ପଦଶ୍ରୀଧର ସ୍ରଷ୍ଟାଙ୍କ ବିଶ୍ୱାସଯୋଗ୍ୟ ଜୀବନୀ ଏବଂ କୃତିଗୁଡ଼ିକର ସାମଗ୍ରିକ ସଙ୍କଳନ ଆଜିଯାଏ ହୋଇପାରିନଥିବା ବାସ୍ତବରେ ପରିତାପର ବିଷୟ । ଅବଶ୍ୟ ତାଙ୍କ କୃତିଗୁଡ଼ିକରେ ଇତସ୍ତତଃ ଉଲ୍ଲିଖିତ ଜୀବନୀ ସମ୍ବନ୍ଧୀୟ କ୍ଷୀଣ ସୂଚନା ଆଧାରରେ ଏବଂ କିମ୍ବଦନ୍ତୀକୁ ଭିତ୍ତିକରି କଳ୍ପନା-ଚେଷ୍ଟା ହୋଇଛି ଓ ଖ୍ରୀ:ଅ ୧୬୭୫ ରୁ ଖ୍ରୀ:ଅ ୧୭୨୫ ଯାଏ ସେ ଜୀବିତ ଥିବା ସୂଚନା ମିଳେ ସତ, କିନ୍ତୁ ତାଙ୍କ ସୃଷ୍ଟିର ଆନୁପୂର୍ବିକତା ବା କେଉଁ କୃତି ପରେ କେଉଁ କୃତି ରଚିତ ହୋଇଛି ସେ ସମ୍ବନ୍ଧରେ ତଥ୍ୟମୂଳକ କୌଣସି ପ୍ରଚେଷ୍ଟା ଅଦ୍ୟାପି ହୋଇନାହିଁ । ଏ ପ୍ରବନ୍ଧରେ ତାଙ୍କର କେତେକ ବିଶିଷ୍ଟ (୧) ସୃଷ୍ଟିକ୍ରମ ବିଷୟରେ ସମ୍ୟକ୍ ଆଲୋକପାତ କରିବା ଚେଷ୍ଟା କରାଯାଇଛି । ଯେଉଁ କେତେଗୋଟି ମୌଳିକ ତଥ୍ୟକୁ ଆଧାର ରୂପେ ଗ୍ରହଣ କରାଯାଇଛି ସେ ମଧ୍ୟରୁ ଅଳଂକାର ସଂଯୋଜନକୁ ମୁଖ୍ୟ ରୂପେ ଗ୍ରହଣ କରାଯାଇଛି । ଅନ୍ୟାନ୍ୟ ଆନୁଷଙ୍ଗିକ ଯୁକ୍ତି ତାହାର ସହାୟକ ମାତ୍ର ।

ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟିର କ୍ରମ ନିର୍ଣ୍ଣୟରେ 'ଭଞ୍ଜବ୍ରହ୍ମ'ରେ ଯାହା ଉଲ୍ଲିଖିତ ହୋଇଛି ତାହା ଯୁକ୍ତିହୀନ ଓ ନିତାନ୍ତ ଭକ୍ତ ନ ହେଲେ ଏପରି ଅନ୍ଧବିଶ୍ୱାସରେ କେହି ଆଗ୍ରହୀ ହୋଇ ନ ପାରେ ।୨। ଗୌରକୁମାର

ବ୍ରହ୍ମାଙ୍କ ଏ ସମ୍ବନ୍ଧୀୟ ସନ୍ଦିଗ୍ଧ ଉକ୍ତିକୁ ବଶିଷ୍ଟ ମତ ରୂପେ ଗ୍ରହଣ କରି ହୁଏ ନାହିଁ ।[୩] ପଣ୍ଡିତ ବିନାୟକ ମିଶ୍ରଙ୍କ ଉକ୍ତିରେ ଯୌକ୍ତିକତା ନାହିଁ ।[୪] ଅନ୍ୟ କୌଣସି ଆଲୋଚକ ଏ ସମ୍ବନ୍ଧରେ ଯୁକ୍ତିସିଦ୍ଧ ମତ ଦେଇଥିବା ଆମ ମନେ ହୁଏ ନାହିଁ ।

ଉପେନ୍ଦ୍ରଙ୍କ କାବ୍ୟଗୁଡ଼ିକୁ ଅନୁଶୀଳନ କଲେ ସମୟସୀମା ନିର୍ଦ୍ଦେଶକ ଏକମାତ୍ର ପଦ ରସଲେଖାରୁ ଉପଲବ୍ଧ ହୁଏ ।

ଦିବ୍ୟସିଂହ ଗଜପତି ଅଙ୍କ ସପତବିଂଶତି ଶେଷ ଦିନେ ଶେଷ ଏହୁ ଗୀତ (୨୨-୧୭) ଏଥିରୁ ସ୍ପଷ୍ଟ ହୁଏ ଖ୍ରୀ: ଅ ୧୭୧°ରେ କବି ରସଲେଖା କାବ୍ୟକୁ ସମ୍ପୂର୍ଣ୍ଣ କରିଥିଲେ । ଏ ପ୍ରବନ୍ଧରେ ଆଲୋଚନା ପାଇଁ ଗୃହୀତ କାବ୍ୟଗୁଡ଼ିକ ମଧ୍ୟରେ ରସଲେଖା କବି ପ୍ରତିଭା ବିକାଶର ସର୍ବନିମ୍ନ ଆଧାର ହେଲେ ଅନ୍ୟାନ୍ୟ କାବ୍ୟଗୁଡ଼ିକ ଯେ ପରବର୍ତ୍ତୀ ସୃଷ୍ଟି ଏଥିରେ ସନ୍ଦେହ ନାହିଁ । ପୁଣି ରସଲେଖାରେ ପ୍ରଦର୍ଶିତ କବି ପ୍ରତିଭାକୁ ମାନଦଣ୍ଡ ରୂପେ ଗ୍ରହଣ କରି ସମସ୍ତ ସୃଷ୍ଟିକୁ ତାହାର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କହିବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ବର୍ତ୍ତମାନ କେତେକ ନିର୍ଭରଯୋଗ୍ୟ ବଶିଷ୍ଟ କାରଣକୁ ଉପଜୀବ୍ୟ କରି କବିଙ୍କ କୃତିର ଆନୁପୂର୍ବିକତା ନିର୍ଣ୍ଣୟ କରାଯାଉଅଛି —

## (କ) ଖଳନିନ୍ଦା ଓ ସଜ୍ଜନ ପ୍ରଶଂସାରେ ନମ୍ରତାରୁ ଦାମ୍ଭିକତା-

ସଜ୍ଜନ ପ୍ରଶଂସା ଓ ଖଳନିନ୍ଦାକୁ ସଂସ୍କୃତ ଅଳଂକାର ଗ୍ରନ୍ଥରେ କାବ୍ୟର ଏକ ବଶିଷ୍ଟ ବିଭବ ରୂପେ ଉଲ୍ଲିଖିତ ହୋଇଛି । ୫ । କାବ୍ୟରେ ମଙ୍ଗଳାଚରଣ ପରି ଏହାର ମହତ୍ତ୍ୱ ମଧ୍ୟ ସ୍ୱୀକୃତ । କବିଙ୍କ ସୃଷ୍ଟି ଓ ପ୍ରତିଭାର ବିକାଶ ସହିତ ସଜ୍ଜନ ପ୍ରଶଂସା ଓ ଖଳ ନିନ୍ଦାରେ କବି ଧୀରେ ଧୀରେ ନମ୍ରତାରୁ ଦାମ୍ଭିକତା ଆଡ଼କୁ ଅଗ୍ରସର ହୋଇଛନ୍ତି । ଅବଶ୍ୟ ତାହାକୁ ଦାମ୍ଭିକତା ନ କହି ଆତ୍ମବିଶ୍ୱାସ ବା ଆତ୍ମପ୍ରତ୍ୟୟ କୁହାଯାଇପାରେ । ଅଧିକନ୍ତୁ ବ୍ୟାପକତା ପ୍ରତିଭାର ଏକ ଅଂଶ, କବିଙ୍କ ପ୍ରତିଭା ବିକାଶ ସହିତ କାବ୍ୟର ଲୋକପ୍ରିୟତା ଏହି ଆତ୍ମ ବିଶ୍ୱାସର କାରଣ ହୋଇପାରେ ।

ରସଲେଖାରେ—

ସାଧୁଜନେ ମ ଯେମନ୍ତ ଥିଲେ, ଏଥି ଦୋଷ (୨୨ ଛାନ୍ଦ ୧୨ ପଦ)
ଖଳଦୂଷଣକୁ ନାହିଁ ଡର, ପର ହିଂସାରେ ସେ ମହାତତ୍ପର (୨୨-୧୨)

ରସିକ ହାରାବଳୀରେ ଏଥିରେ ଥିବା ନମ୍ରତା ନାହିଁ ।
ଭବ ପଣ୍ଡିତ ହୃଦୟ ମଣ୍ଡିତ ହେବ ।
ଦଣ୍ଡିତ କରିବ ସବୁ ଖଳ ଗଣ ଚତୁର ଜାଣିଯାଏ ଥିବା । (୧୮-୧୨)

ପ୍ରେମ ସୁଧାନିଧିରେ ଦେଖନ୍ତୁ ଏହାଠାରୁ କଳା ଅସ୍ପୃଷ୍ଟ ପ୍ରକାଶ୍ୟ ଓ ପ୍ରକାଶ ଭଙ୍ଗୀରେ ସ୍ଥୂଳତା ।

ରସିକ ହୃଦୟ ନେତ୍ରାବଳି ଉଲ୍ଲାସିବ,
ପଣ୍ଡିତ କୁମୁଦ ମୁଦବର୍ଦ୍ଧନ କରିବ ।
ଖଳକୁଳ ଅନ୍ଧକାର ବେଗେ ବିଦାରିବ । (୧୨-୧୪)

ଏ ପ୍ରବନ୍ଧରେ ବିଚାରକୁ ନିଆଯାଇଥିବା ସାତଗୋଟି କାବ୍ୟ ମଧ୍ୟରୁ ଉପର୍ଯ୍ୟୁକ୍ତ ତିନିଗୋଟିକୁ ପ୍ରାଥମିକ ସ୍ତରର ଏବଂ କ୍ରମ ପ୍ରୌଢ଼ତ୍ୱ ଲକ୍ଷ୍ୟକରି ପରପର୍ଯ୍ୟାୟରେ ସୁଭଦ୍ରା ପରିଣୟ, ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ ଶେଷରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ ସ୍ଥାନ ଦିଆଯାଉଛି । ଉଲ୍ଲିଖିତ କ୍ରମ ହିଁ ଏଥିରେ ବିଭିନ୍ନ ସୂତ୍ରରେ ପ୍ରତିପାଦିତ ହୋଇଛି । ସୁଭଦ୍ରା ପରିଣୟରେ ଦେଖନ୍ତୁ—

ସେହି ରୂପ ଏ ଗୀତ ସବର୍ଣ୍ଣି କ୍ରମ ତେଣି
ସୁଧୀ ସୁରସିକମାନେ ଶୁଣେ ହେବେ ସୁଖୀ । (୧-୨୧)

ପ୍ରଥମେ କବି 'ସ' ଆଦ୍ୟ ଅକ୍ଷରରେ କାବ୍ୟ ଲେଖି ଶ୍ରମ ସ୍ୱୀକାର କରିଥିବା ଉଲ୍ଲେଖରୁ ମନେହୁଏ 'ବୈଦେହୀଶ ବିଳାସ' ଶ୍ରମସାଧ୍ୟ ହୋଇଥିଲେ ମଧ୍ୟ ସେ କଥା କୁତ୍ରାପି ଉଲ୍ଲେଖ କରି ନାହାନ୍ତି । ଅବଶ୍ୟ କବି ଅନ୍ୟାନ୍ୟ ବହୁ କାବ୍ୟରେ କାବ୍ୟ ଶ୍ରମସାଧ୍ୟ ବୋଲି ଉଲ୍ଲେଖ

କବିଚନ୍ଦ୍ର ।ଟ। ପ୍ରେମ ସୁଧାନିଧି କାବ୍ୟକୁ ଅତ୍ୟଧିକ ଶବ୍ଦାଳଂକାରରେ ସ୍ୱୟଂସମ୍ପୂର୍ଣ୍ଣ କରିବା ପାଇଁ, ଲାବଣ୍ୟବତୀରେ ବେଶ ବର୍ଣ୍ଣନା ସଂଯୋଜନ କରିବାରେ ଏବଂ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ପଞ୍ଚବିଂଶ ଛାନ୍ଦଟିକୁ ଏକାଧାରରେ ତିନିଗୋଟି ବୃତ୍ତ ଓ ତିନିଗୋଟି ରାଗ ବର୍ଣ୍ଣନା କରିବାରେ କବି ଯେ ଶ୍ରମସାଧ୍ୟ କାର୍ଯ୍ୟ କରିଛନ୍ତି ଏଥିରେ ସନ୍ଦେହ ନାହିଁ । ଲାବଣ୍ୟବତୀରେ କବିଙ୍କ ଆତ୍ମପ୍ରତ୍ୟୟ ବଢ଼ିଛି—

ମଧୁ ମକ୍ଷି ଝଞ୍ଜି କ୍ଷେତ୍ରେ ଅମୃତାଦର ସୁରେ
ଭକତ ଯେମନ୍ତେ ସାଧୁଜନେ ସେ ପ୍ରକାରେ,
ଦୋଷ ଥିଲେ ତେବେଁ କରିବେ ଆଦର,
ଏଣୁ ଅତିଶୟ ସଂଶୟକୁ କର ଦୂର । (୧-୧୨)

କବି ଏ କାବ୍ୟକୁ ସରସ ସୁନ୍ଦର କରିବା ପାଇଁ ଯେପରି ପ୍ରଥମରୁ ଚେଷ୍ଟିତ ତାହା କାବ୍ୟାଦର୍ଶ ପ୍ରସଙ୍ଗରେ ଆଲୋଚିତ ହେବ । ଶବ୍ଦାଳଂକାର ଅପେକ୍ଷା ଅର୍ଥାଳଂକାର ମଧ୍ୟ ଏ କାବ୍ୟର ମହତ୍ତ୍ୱ ପ୍ରତିପାଦନ ଅନ୍ୟ ଏକ କାରଣ । ତେଣୁ ଲାବଣ୍ୟବତୀ ଏକ ଶ୍ରେଷ୍ଠ ରସାତ୍ମକ କାବ୍ୟ ଭାବେ ସୁଧୀ ସହୃଦୟ ପାଠକଙ୍କୁ ଯାବଦିନ ଧରି ପ୍ରଭାବିତ କରି ଆସିଛି ।

ବୈଦେହୀଶ ବିଳାସରେ ଉପେନ୍ଦ୍ରର ପ୍ରୌଢ଼ତା ସହିତ କବିଙ୍କ ଆତ୍ମ ପ୍ରତ୍ୟୟର ଦୃଢ଼ତା ଅଭିବ୍ୟଞ୍ଜିତ ।

ବୁଧ ସଂପଦ ମୂର୍ଖ ଭେଦେ କାରକ ଏହି । (୩୫-୭୨)

କିନ୍ତୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ପ୍ରତିଭା ଓ ପାଣ୍ଡିତ୍ୟର ପ୍ରଚଣ୍ଡତା ମଧ୍ୟରେ କବି ଉଗ୍ରହରା ହୋଇଥିବା ପରିଲକ୍ଷିତ ହୁଏ । ତେଣୁ ଏ କାବ୍ୟକୁ ପ୍ରତିଭାର ଅବକ୍ଷୟକାଳୀନ ସୃଷ୍ଟି ଭାବରେ ଗ୍ରହଣ କରିବା ଅଧିକ ସମୀଚୀନ ମନେହୁଏ । ଏଥିରେ କେବଳ ସୁଧୀ, ରସିକ, ସହୃଦୟ ପାଠକଙ୍କୁ ଆହ୍ୱାନ କରାଯାଇନାହିଁ । ତାଙ୍କ ମତରେ—

ଯେ କବି ଅର୍ଥୀ ପଣ୍ଡିତ ସୁହୃଦ ରସିକ
ସେହି ସେବକ ଏ ଛାନ୍ଦ (୧୨-୧)

ଖଳ ପ୍ରତି ଦ୍ୱେଷ ଭାବ ପ୍ରଦର୍ଶନ କରି ଆତ୍ମ ପ୍ରତ୍ୟୟର ଚରମ ଭାବ ଅଭିବ୍ୟକ୍ତ କରିଛନ୍ତି ।

ବିଜ୍ଞ ସୁଜନ ରଞ୍ଜନ ପଦମାନ ମାନସେ କରିବ ବିସ୍ତର
ଅଳ୍ପ ବ୍ୟୁତ୍ପତ୍ତି ଉତ୍ପତ୍ତି ନରଚନ୍ତି ବାନର ମୂର୍ତ୍ତି ପରିକାର ।
ଗୁଣବନ୍ତ ନାହିଁ ଆନନ୍ତ ବଡ଼ ଏ ଗର୍ବ,
ଏ ଗୀତ ସବିତା ତେଜ ପ୍ରଭାବରେ ତାମସ ତମସ ନାଶିବ ।
(କୋ-ବ୍ର-ସୁ-୨୮-୧)

ଉପରୋକ୍ତ ଉଦାହରଣ ବ୍ୟତୀତ, ସଜ୍ଜନ ପ୍ରଶଂସା ଓ ଖଳ ନିନ୍ଦାତ୍ମକ ପଦ ସଂଖ୍ୟାରେ ମଧ୍ୟ କାବ୍ୟ ଗୁଡ଼ିକରେ କ୍ରମବର୍ଦ୍ଧମାନ ରୂପ ଲକ୍ଷ୍ୟ କରାଯାଏ । ବୋଧହୁଏ କବି ଧୀରେ ଧୀରେ କାବ୍ୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିବା ସଙ୍ଗେ ସଙ୍ଗେ ତଦାନୀଂତନ ବହୁ ପଣ୍ଡିତମନ୍ୟ ସଂସ୍କୃତ ପଣ୍ଡିତଙ୍କ କଟୂକ୍ତି ଇଂଗିତର ଶରବ୍ୟ ହୋଇ ଏପରି ବାକ୍ୟମାନ ଲେଖିବା ପାଇଁ ଉତ୍ସାହିତ ହୋଇଛନ୍ତି । ସମୟର ଅପ୍ରତ୍ୟକ୍ଷ ପ୍ରଭାବରେ ତାଙ୍କର କବି ପ୍ରତିଭା ସଙ୍କୁଚିତ ରୂପ ନେଇଛି ସତ, କିନ୍ତୁ ଦୁଷ୍ଟ-ସାହିତ୍ୟକୁ ମହିମାନ୍ୱିତ କରିବା ପାଇଁ ବାଧ୍ୟହୋଇ ସେ କପଟତାରେ ଉକ୍ତି ଅପବ୍ୟୟ କରିଛନ୍ତି । ନୋହିଲେ ସେ ଏପରି ସୂଚନା ଦେଇ ନ ଥାନ୍ତେ —

ସୁରସ ପୂରଣ ରଚିତ ଯେହୁ, ସାଧୁ ସୁରସିକମାନଙ୍କୁ ମୋହୁ ।
ସହଜେ ଏକ ବର୍ଣ୍ଣ ନସ୍ତମରୁ ସକଳ ମୂର୍ଖଙ୍କୁ ସନ୍ତୋଷ କରୁ ।
(ସୁ: ପରିଣୟ ୧୭-୨୪)

## (ଖ) କାବ୍ୟାଦର୍ଶର ଉପସ୍ଥାପନା —

ମହତ୍ କବି ମାତ୍ରେ ସ୍ପଷ୍ଟ ଭାବରେ ହେଉ ବା ପ୍ରକାରାନ୍ତରେ ହେଉ, ନିଜର କାବ୍ୟାଦର୍ଶ ସମ୍ବନ୍ଧରେ ସୂଚନା ଦେବାକୁ ଭୁଲି ନଥାନ୍ତି । ମହାକବି କାଳିଦାସଙ୍କ ରଘୁବଂଶର ମଙ୍ଗଳାଚରଣରୁ କବିଙ୍କ ମହତ୍ କାବ୍ୟାଦର୍ଶ ସ୍ପଷ୍ଟ ହୋଇଉଠେ ।୨। ସେ ମହାଦେବ ଓ ପାର୍ବତୀଙ୍କ ଅବିଚ୍ଛିନ୍ନ ସମ୍ପୃକ୍ତ ଶବ୍ଦାର୍ଥର ସାହିତ୍ୟ କଥା ଉଲ୍ଲେଖ କରି ନିଜର ସଂଗୀତ

ରୂପ ସହିତ ଅର୍ଥର ରସଧର୍ମୀ ଭାବ ସମନ୍ୱିତ କାବ୍ୟ ରୂପର ଆଭାସ ଦେଇଛନ୍ତି । ସେହିପରି ଶ୍ରୀହର୍ଷଙ୍କ 'ନୈଷଧୀୟ ଚରିତ'ର ବୈଶିଷ୍ଟ୍ୟ ପ୍ରଭାବରେ ଅଭିବ୍ୟକ୍ତ ହୋଇଛି । ସମସ୍ତ ଗୁଣ ସମ୍ପନ୍ନା ବୈଦର୍ଭୀର ପ୍ରଶଂସା ମାଧ୍ୟମରେ କବି ଦଣ୍ଡୀଙ୍କ ପ୍ରଦର୍ଶିତ ଶ୍ରେଷ୍ଠ କାବ୍ୟ ଲକ୍ଷଣ ବୈଦର୍ଭୀରୀତିକୁ କାବ୍ୟାଦର୍ଶ ଭାବେ ଗ୍ରହଣ କରିଛନ୍ତି ।୮। କବି ଉପେନ୍ଦ୍ର ମଧ୍ୟ କେଉଁଠି ସ୍ପଷ୍ଟ ଶବ୍ଦରେ କେଉଁଠି ସୂଚକ ଶବ୍ଦରେ ନିଜ କାବ୍ୟାଦର୍ଶ ସମ୍ବନ୍ଧରେ ପାଠକଙ୍କୁ ଅବଗତ କରାଇଅଛନ୍ତି । ଏହି ପ୍ରବନ୍ଧ କାବ୍ୟାଦର୍ଶର କ୍ରମ ବିବର୍ତ୍ତନକୁ ଆଧାର କରି ଆଲୋଚିତ କାବ୍ୟଗୁଡ଼ିକର ଆନୁପୂର୍ବିକତା ବା ସୃଷ୍ଟି କ୍ରମ ନିର୍ଣ୍ଣୟ କରାଯାଇ ପାରିବ ।

ରସ ଲେଖାରେ କୌଣସି କାବ୍ୟାଦର୍ଶର ସୂଚନା ନାହିଁ । କିନ୍ତୁ ରସିକହାରାବଳୀରେ—

ଚତୁରର କରିବ ଉତ୍ତମ ଛାନ୍ଦ ଗୀତ
ରସ ସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ । (୧–୬)

ଏଥିରେ କେବଳ ଶୃଙ୍ଗାର ରସକୁ ମହତ୍ତ୍ୱ ଦେଇଥିବା ଅଭିବ୍ୟକ୍ତ ହୋଇଛି ।

ପ୍ରେମ ସୁଧାନିଧିରେ—
ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ଗୀତ ହୋଇବ । (୧-୨)

ଏବଂ

ଯମକ ପ୍ରଧାନ କରି କଲି ଯେଣୁ ଗୀତ
ଶ୍ଳେଷ ଜନ ନ ବନ୍ଧୁର କଲା ସମାପତ (୧୭-୨୦)

ଏଥିରୁ ସ୍ପଷ୍ଟ ହୁଏ, କବି ଏ କାବ୍ୟକୁ ଶୃଙ୍ଗାର ରସ ସହିତ ଯମକ ପ୍ରଧାନ ହାର ସାଙ୍ଗୀତିକ ମର୍ଯ୍ୟାଦାରେ ମଧ୍ୟ ବିଭୂଷିତ କରିଛନ୍ତି ।

ସୁଭଦ୍ରା ପରିଣୟରେ କାବ୍ୟାଦର୍ଶର ଅଧିକ ବ୍ୟାପ୍ତି ଉପଲବ୍ଧ ହୁଏ ।

ସେ ଚରିତ ନବରସ ବର୍ଣ୍ଣନା ପ୍ରଧାନ (୧-୧୨) ।

ପୁଣି କହନ୍ତି—

ସୁଜ୍ଞ ଜନେ ଶୁଣ ଏ ଗୀତରେ ଦେଇ ମତ,
ସରଳ ପଦମାନଙ୍କେ ମୋହିବ ଏ ଶ୍ରୁତ (୧-୧୫)

ଏଥିରୁ କାବ୍ୟାଦର୍ଶ ସମ୍ବନ୍ଧରେ ଅଧିକ ସୂଚନା ମିଳେ । ଶୃଙ୍ଗାର ରସ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ ମଧ୍ୟ ଅନ୍ୟାନ୍ୟ ସମସ୍ତ ରସ ପରିପୋଷକ ଭାବେ ସ୍ଥାନ ଅଧିକାର କରିଛନ୍ତି । ସରଳତା ଏ କାବ୍ୟର ମୂଳାଧାର ।

ଲାବଣ୍ୟବତୀରେ କାବ୍ୟାଦର୍ଶର ବ୍ୟାପକତା ପାଠକଙ୍କୁ ଆକୃଷ୍ଟ କରେ ।

ମୂର୍ତ୍ତିମନ୍ତ କରି ମୃଦୁ ଗୀତ ତତ୍ପରଇ,
ବର୍ଣ୍ଣ କରିଥିବ ଅଳଂକାର ଯୁକ୍ତ ହୋଇ ।
ପଦ ସରଳ ଧ୍ୱନରେ ମାନସ ମୋହିବ,
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ । (୧-୮)

ଏଥିରେ ଭରତ ସଂସ୍କୃତ ଅଳଂକାର ଶାସ୍ତ୍ର ପ୍ରବର୍ତ୍ତିତ ସମସ୍ତ କାବ୍ୟ-ବାଦକୁ ସର୍ତ୍ତିତ କରିଥିବା ଆଲୋଚତ ହୋଇଅଛି । ମୂର୍ତ୍ତିମନ୍ତ ଶବ୍ଦରେ ଗୁଣବାଦ, ଅଳଂକାର ଦ୍ୱାରା ଅଳଂକାରବାଦ, ଧ୍ୱନ ଶବ୍ଦରେ ଧ୍ୱନବାଦ, ଆନନ୍ଦ ଶବ୍ଦ ରସବାଦର ସୂଚକ ବୋଲି ଗୃହୀତ ହୋଇଛି । ସେହିପରି ବୈଦେହୀଶ ବିଳାସରେ—

ରଚଇ କବିଙ୍କ ମାର୍ଗେ ପ୍ରସରିଲା ବୁଦ୍ଧି,
ରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି (୫୨-୫୧)

ଶେଷରେ ସେ ବିଚିତ୍ର ମାର୍ଗକୁ କାବ୍ୟାଦର୍ଶ ଭାବେ ଏଥିରେ ଗ୍ରହଣ କରିଥିବା ସୁସ୍ପଷ୍ଟ । 'ବକ୍ରୋକ୍ତି ଜୀବିତମ୍' ଗ୍ରନ୍ଥକର୍ତ୍ତା ଆଚାର୍ଯ୍ୟ କୁନ୍ତକ ପୂର୍ବ ପ୍ରଚଳିତ ବୈଦର୍ଭୀ, ଗୌଡ଼ୀ ଓ ପାଞ୍ଚାଳୀ ରୀତିର ନାମକରଣରେ ଦେଶବାଚକ ଶବ୍ଦର ଅଯଥାର୍ଥତା ଉପଲବ୍ଧି କରି ସେ କାବ୍ୟ ରୀତିର ନାମକରଣ କରିଛନ୍ତି—ସୁକୁମାର, ମଧ୍ୟମ ଓ ବିଚିତ୍ର । ମାର୍ଗ ସଂକ୍ଷେପରେ କହିଲେ, ବିଚିତ୍ର ମାର୍ଗରେ ଅଳଂକାରର ପ୍ରାଧାନ୍ୟ ରହେ । କେବଳ ଏତିକି ନୁହେଁ, ଗୋଟିଏ ଅଳଂକାର ଅନ୍ୟ ଅଳଂକାର ସହିତ ଗୁମ୍ଫିତ ହୋଇ ନୂତନ ବୈଚିତ୍ର୍ୟ ମଧ୍ୟ ସୃଷ୍ଟି କରେ । ଏହି ଶୈଳୀରେ କାବ୍ୟ ଗଣିକା ନାୟିକା ପରି କୃତ୍ରିମ ଶୃଂଗାର ସଜ୍ଜା ଓ ଅଳଂକାର ଭୂଷିତ ହୋଇ ଆତ୍ମ ପ୍ରଦର୍ଶନ କରେ । ବାଣଭଟ୍ଟ, ଭବଭୂତି, ରାଜଶେଖର ପ୍ରଭୃତିଙ୍କ ରଚନାରେ ଏହି ବିଚିତ୍ର ମାର୍ଗର ପରିପ୍ରକାଶ ଅତ୍ୟଧିକ । ଏଣୁ କବି ଅଳଂକାରର ପ୍ରାଧାନ୍ୟ ରକ୍ଷାକରି କାବ୍ୟଟି ରଚନା କରିଥିବାରୁ ଏବଂ ଉକ୍ତି ବୈଚିତ୍ର୍ୟକୁ ସ୍ଥାନ ଦେଇଥିବାରୁ 'ବିଚିତ୍ର ମାର୍ଗ' କଥା ଉଲ୍ଲେଖ କରିଛନ୍ତି । ଆମେ ଦେଖୁଁ, ଭଞ୍ଜଙ୍କ ସମସ୍ତ କାବ୍ୟ ଅପେକ୍ଷା ବୈଦେହୀଶ ବିଳାସରେ ଅଳଂକାର ନିର୍ଦ୍ଦେଶ ଓ ଉପଯୋଗ ସର୍ବାଧିକ । ସେହି ପର୍ଯ୍ୟାୟରେ ଏହାର ବିସ୍ତୃତ ଆଲୋଚନା କରାଯିବ । ସେହିପରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ କବିଙ୍କ କାବ୍ୟାଦର୍ଶ ବହୁ ସ୍ଥଳରେ ଉଦ୍‌ଘୋଷିତ ।

ଏ ଗ୍ରନ୍ଥ ଇକ୍ଷୁ ଲତିକା ରସ ଆସ୍ୱାଦନେ,
ଅର୍ଥୀ ହେବ ଏଥି ଜ୍ଞାନ ଋଦ୍ଧ ଥିଲା ଜନେ । (୮୪-୧)
ପୁରାଣ ଅଭିଧାନ ଜାଣିଥିଲେ, ଜାଣି କସ ହେବ ବହୁତ ହେଲେ
ନାନା ଭେଦରେ ଯେ ବିଚକ୍ଷଣ, ସେତୁ ଜାଣେ ଅଳଂକାର ଲକ୍ଷଣ
ସେହି କରୁ ଏ ଗ୍ରନ୍ଥ ବିବେଚନା (୮-୧)

ଉକ୍ତ ଉକ୍ତିରେ କାବ୍ୟର ସରସତା ଓ କାଠିନ୍ୟ ସହିତ ଶବ୍ଦ ପ୍ରକର୍ଷ, ଅଳଂକାର ଶାସ୍ତ୍ର ସମ୍ମତ ରୀତି, ପୌରାଣିକ ବିଷୟ, ଆଭିଧାନିକ ଶବ୍ଦ ସମ୍ଭାରକୁ ଇଂଗିତ କରାଯାଇଛି । ସହୃଦୟ ପାଠକଙ୍କୁ ଆହ୍ୱାନ କରାଇ କବି କାବ୍ୟର ଚରମୋତ୍କର୍ଷ ପ୍ରତି ଅଂଗୁଳି ନିର୍ଦ୍ଦେଶ କରିଛନ୍ତି । ଏହା ବ୍ୟଞ୍ଜିତ-

ଯେପରି ନୈଷଧ ଚରିତର (୧୧-୩୧) ଶ୍ଲୋକରେ ନୈଷଧୀୟ ଗୀତ ଅନୁସରଣ ପ୍ରାକୃତ କାବ୍ୟରେ ସଂସ୍କୃତ କବିଙ୍କର ବ୍ୟତିକ୍ରମ ଅନ୍ତର ସୂଚନା ଦେଇ କାବ୍ୟାଦର୍ଶର ପ୍ରାଞ୍ଜଳତା ବ୍ୟକ୍ତ କରିଛନ୍ତି । 'ନୈଷଧୀୟ ଚରିତମ'ର ଦାର୍ଶନିକତା କବିଙ୍କ ଆତ୍ମପ୍ରତ୍ୟୟକୁ କେବଳ ଓ ପୁଷ୍ଟ କରିଛି ।

କବି ଉପେନ୍ଦ୍ର ଉତ୍ତମ କବି ପୁଞ୍ଜ ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚାର (କୋ-ବ୍ର ସୁ-୧୮-୨୮) ପଦ ସହିତ ନୈଷଧର ନିମ୍ନୋକ୍ତ ଶ୍ଳୋକ ତୁଳନୀୟ ।

ତସ୍ୟା ଗିରାମଧୁ ମସୃଣ କବିକୁଳ ଦୃଷ୍ଟାଧ୍ୱ ପାନ୍ଥେ ମହା-
କାବ୍ୟେ ବୃତ୍ତିଣି ନୈଷଧୀୟ ଚରିତେ ସର୍ଗୋ ନିସର୍ଗୋଜ୍ଜ୍ୱଳଃ ।
(ଶ୍ରୀହର୍ଷ-ନୈ-ଚରିତମ୍ ୮-୧୦୯)

## (ଗ) ମଙ୍ଗଳାଚରଣରେ କବିଙ୍କ ଧର୍ମୀୟ ଧାରଣା- ଅନୈକ୍ୟରେ ଏକତା —

କାବ୍ୟର ସହଜ ପରିସମାପ୍ତି ପାଇଁ କାବ୍ୟର ଆରମ୍ଭ, ମଧ୍ୟ ଓ ଶେଷରେ ଈଶ ବନ୍ଦନା ବା ଇଷ୍ଟଦେବଙ୍କ ବନ୍ଦନାର ଆବଶ୍ୟକତା ଉପଲବ୍ଧି କରିଯାଇଛି । ତାହା ନମସ୍କାରାତ୍ମକ, ଆଶୀର୍ବାଦାତ୍ମକ ବା ବସ୍ତୁ ନିର୍ଦ୍ଦେଶାତ୍ମକ ହେବା ବିଧେୟ । ୧୦ ।

'ରସ ଲେଖା'ର ପ୍ରାରମ୍ଭରେ ହରି-ହରଙ୍କୁ ଏକାଧାରରେ ସ୍ତୁତି କରିଯାଇ ନମସ୍କାରାତ୍ମକ ମଙ୍ଗଳାଚରଣ ସୂତ୍ରପାତ ହୋଇଛି ଓ ଏହି ଗ୍ରନ୍ଥର ପ୍ରତି ଛାନ୍ଦ ଶେଷରେ ଉକ୍ତ ଦେବ ଦୁଇଟି ସ୍ତୁତ ହୋଇଛନ୍ତି ।

ରସିକ ହାରାବଳୀରେ ଜଗନ୍ନାଥ ବନ୍ଦିତ ଓ ନମସ୍କାରାତ୍ମକ ମଙ୍ଗଳାଚରଣ ଗୃହୀତ, କିନ୍ତୁ ଏକାଦଶ, ଦ୍ୱାଦଶ ଓ ପଞ୍ଚଦଶ ଛାନ୍ଦ ଶେଷରେ ରାମ ଆରାଧିତ, ଅନ୍ୟତ୍ର ବନ୍ଦନା ନାହିଁ । ପ୍ରେମ ସୁଧାନିଧିରେ ନମସ୍କାରାତ୍ମକ ମଙ୍ଗଳାଚରଣ ସଂଯୋଜିତ ଓ ରାମଚନ୍ଦ୍ର ବନ୍ଦିତ । ପ୍ରଥମ, ନବମ ଓ ଦଶମ ଛାନ୍ଦ ଶେଷରେ ରାମ, ତ୍ରୟୋଦଶ ଶେଷରେ ନୃସିଂହ ତଥା ଷୋଡ଼ଶ ଛାନ୍ଦ ଶେଷରେ ରାମ ଓ ଶିବ ବନ୍ଦିତ ।

ସୁଭଦ୍ରା ପରିଣୟରେ ପୁରୁଷୋତ୍ତମ କ୍ଷେତ୍ରର ବର୍ଣ୍ଣନା ଦ୍ୱାରା ବସ୍ତୁ ନିର୍ଦ୍ଦେଶାତ୍ମକ ମଙ୍ଗଳାଚରଣ କରାଯାଇଛି । ଷୋଡ଼ଶ ଛାନ୍ଦ ଶେଷରେ କେବଳ ଦାରୁବ୍ରହ୍ମ ବନ୍ଦିତ । ଅନ୍ୟତ୍ର ରାମ ବା କୃଷ୍ଣଙ୍କୁ ବନ୍ଦନା କରି କରିଛନ୍ତି । ମନେହୁଏ ଲାବଣ୍ୟବତୀ କାବ୍ୟ ରଚନା ସମ୍ପୂର୍ଣ୍ଣ କରି ରାମତାରକ ମନ୍ତ୍ରରେ ସିଦ୍ଧିଲାଭ କରିଛନ୍ତି । ତେଣୁ ସେ କାବ୍ୟରେ ସୂଚିତ ହୋଇଛି ।

ତାରକ ମନ୍ତ୍ର ପରସାଦେ, ମୋହର କଣ୍ଠ ପଣ ଉଦେ ।

ଏ କାବ୍ୟରେ ନମସ୍କାରାତ୍ମକ ମଙ୍ଗଳାଚରଣ ଗୃହୀତ ଓ ରାମ, ପରଶୁରାମ ତଥା ବଳରାମ ଏକାଧାରରେ ବନ୍ଦିତ ।

ଜୟ ଜୟ ଜୟ ରାମ ଜନକ ସୁଖଦ,
ଶ୍ୟାମ ହରଷ ଦାନରେ ସଦା ଶଶାରଦ (୧-୧)

ଦ୍ୱିତୀୟ ଶେଷରେ ଜଗନ୍ନାଥରୂପୀ ରାମ, ତୃତୀୟ ଶେଷରେ ସୀତାରାମ, ଷୋଡ଼ଶ ଶେଷରେ ରାମଚନ୍ଦ୍ର ତଥା ଭଞ୍ଜବଂଶର ଇଷ୍ଟଦେବୀ ଦୁର୍ଗା ବନ୍ଦିତ । ଅନ୍ୟ ସମସ୍ତ ଛାନ୍ଦ ଶେଷରେ ରାମଙ୍କୁ ହିଁ ଆରାଧନା କରାଯାଇଛି । ୪୩ ଛାନ୍ଦ ଶେଷରେ କୌଣସି ଦେବତାର ଉଲ୍ଲେଖ ନାହିଁ ।

ବୈଦେହୀଶ ବିଳାସର ମଙ୍ଗଳାଚରଣରେ କୃଷ୍ଣ ଓ ସୂର୍ଯ୍ୟ ଏକାଧାରରେ ନମସ୍କାରାତ୍ମକ ଶ୍ଳେଷରେ ବନ୍ଦିତ । ଅବଶ୍ୟ ବହୁ ବିଜ୍ଞ ପଣ୍ଡିତ ସେଥିରୁ ବହୁ ଅର୍ଥ ବାହାର କରି ଶିବ-ଗଣେଶ ଆଦିଙ୍କ ସ୍ତୁତି ହୋଇଥିବା ବ୍ୟକ୍ତ କରିଛନ୍ତି । କିନ୍ତୁ ମୁଖ୍ୟତଃ ସୂର୍ଯ୍ୟ ଓ କୃଷ୍ଣ ବନ୍ଦିତ ହେବାର ନିର୍ଦ୍ଦେଶ ରହିଛି—

କୃଷ୍ଣରଶ୍ମିବା ବ୍ରହ୍ମାଣ୍ଡେଶ୍ୱର ପରମ ପଦ ଭଜନରେ
ଲଭେ ଏ ଯେନ ଛାନ୍ଦ ଅଦ୍ୟର ରଚିତ ତାଙ୍କୁ ଯେ,
ବଂଶ ସଂହାର ଠାରୁ ଉତ୍ପତ୍ତି କର ବକ୍ଷରେ ସେ
ଦେବେ ସୁଖ ବିଧାନ କରି ଅତି ସୁନ୍ଦର ଆଣ ମନକୁ ଯେ (୧-୩)

ଏ କାବ୍ୟରେ ବୋଧହୁଏ ଆରାଧ୍ୟ ରାମଙ୍କ ପବିତ୍ର ଲୀଳା ଗାଥା ସବିଶେଷ ଉଦ୍‌ଗୀତ ହୋଇଥିବାରୁ କବି ପ୍ରତି ଛାନ୍ଦ ଶେଷରେ କୌଣସି

ଦେବତାଙ୍କ ସ୍ତୁତି ସଂଯୋଜନ କରିବା ଆବଶ୍ୟକତା ଅନୁଭବ କରି ନାହାନ୍ତି । କେବଳ ପ୍ରଥମ ଛାନ୍ଦ ଶେଷରେ ନୀଳାଦ୍ରୀଶ, ୩,୪,୫ ଛାନ୍ଦ ଶେଷରେ ସୀତାବର, ୧୦,୧୯ ଛାନ୍ଦ ଶେଷରେ ସୀତା, ୧୧ ଶେଷରେ ଶେଷଶାୟୀ ଓ ୨୦,୨୮,୪୬,୫୦ ଛାନ୍ଦ ଶେଷରେ ରାମ ଉଦ୍ଗୀତ ।

ଏ କାବ୍ୟରେ କେବଳ ଯେ ବାଲ୍ମୀକିସମ୍ମତ ପ୍ରଭୃତି କଥା କୁହାଯାଇଛି ତାହା ନୁହେଁ, ବରଂ ଊନପଞ୍ଚାଶତ୍ ଛାନ୍ଦରେ ଶ୍ରୀରାମ କବଚର ସାମଗ୍ରିକ ଉପସ୍ଥାପନା ଦ୍ୱାରା କବି ରାମ ଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ବସ୍ତୁ ନିର୍ଦ୍ଦେଶାତ୍ମକ ମଙ୍ଗଳାଚରଣରେ ପୁରୁଷୋତ୍ତମ କ୍ଷେତ୍ର ନିର୍ଦ୍ଦେଶିତ । ବହୁ ପଦରେ (୧୦ରୁ ୫୯ ପଦ ପର୍ଯ୍ୟନ୍ତ) ଜଗନ୍ନାଥଙ୍କ ମହିମା ବର୍ଣ୍ଣିତ । ଏଥିରେ ପ୍ରଥମ ଛାନ୍ଦ ଶେଷରେ ଜଗନ୍ନାଥ, ଦ୍ୱିତୀୟ ଶେଷରେ ବଦ୍ରିକାନାଥ, ତୃତୀୟ ଶେଷରେ ଶେଷଦେବ, ଷଷ୍ଠ ଶେଷରେ କାଶୀଶ୍ୱର ବ୍ୟତୀତ ଅନ୍ୟାନ୍ୟ ଛାନ୍ଦଶେଷରେ ରାମ ସ୍ତୁତି ବନ୍ଦିତ । ଚତୁର୍ବିଂଶ ଓ ପଞ୍ଚବିଂଶ ଛାନ୍ଦଶେଷରେ କୃଷ୍ଣଙ୍କ ବନ୍ଦନା ରହିଛି, ଏକାଦଶ ଛାନ୍ଦଶେଷରେ କୌଣସି ବନ୍ଦନା ନାହିଁ । ଏଥିରେ ମଧ୍ୟ ରାମଙ୍କ ଅନୁଗ୍ରହ କଥା ଉଲ୍ଲିଖିତ ହୋଇଥିବାରୁ ତାରକମନ୍ତ୍ର ସିଦ୍ଧି ପରେ କବି ଲାବଣ୍ୟବତୀ ବୈଦେହୀଶ ବିଳାସ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ରଚନା କରିଥିବେ ।

କବି ଜୀବନ ର ପଞ୍ଚଦେବତା ସ୍ତୁତିରୁ ଏକନିଷ୍ଠତା ଆଡ଼କୁ ଅଗ୍ରସର ହୋଇଛନ୍ତି । ତଥାପି ଧର୍ମୀୟ ଧାରଣାରେ ଉଦାର ଭାବ ପୋଷଣ କରି ସେ ସର୍ବଦେବତାଙ୍କଠାରେ ରାମଙ୍କ ସ୍ୱରୂପ ଓ ରାମଙ୍କ ସ୍ୱରୂପରେ ସର୍ବ ଦେବତାଙ୍କ ସ୍ଥିତି ଉପଲବ୍ଧି କରିଛନ୍ତି ।

ଏ ସମ୍ବନ୍ଧରେ ଆଲୋଚକ ପାଢ଼ୀଙ୍କ ଧାରଣା ଭ୍ରାନ୍ତିକର ମନେ ହୁଏ । ୧୧ ।

ପ୍ରକୃତରେ ଲାବଣ୍ୟବତୀରେ —

ସେ ପ୍ରଭୁ ପଙ୍କଜ ଚରଣେ କରି ଷଟପଦ,
ଭଞ୍ଜ ବୀରବର କରେ ମାନସ ଭ୍ରମର (୧-୬)

ଏହାର ଉକ୍ତ ନମସ୍କାରାତ୍ମକ ମଙ୍ଗଳାଚରଣ କରିଛନ୍ତି ଏବଂ ସୁଭଦ୍ରା ପରିଣୟରେ

ସିଦ୍ଧ ପୀଠ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ,
ସାଧୁଜନେ ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ (୧-୧)

ଏଠାରେ କବି ବସ୍ତୁ ନିର୍ଦ୍ଦେଶାତ୍ମକ ମଙ୍ଗଳାଚରଣରେ ନିର୍ଦ୍ଦେଶ ଦେଇଛନ୍ତି ।

## (ଘ) କାବ୍ୟରେ ଅଳଙ୍କାର ନିର୍ଦ୍ଦେଶ—

ଉପରୋକ୍ତ ଉକ୍ତ ମଙ୍ଗଳ ପରେ (ବୈ:ବିଳାସ-୧ମ ଛାନ୍ଦ-୭ ପଦ) ପଦରେ କବି ଯେଉଁ ଯମକ ଉପମା କଥା ଉଲ୍ଲେଖ କରିଛନ୍ତି, ସେଥିପାଇଁ ତାଙ୍କର ସମସ୍ତ କାବ୍ୟରେ ଉକ୍ତ ଅଧିକ ଅଳଙ୍କାର ପ୍ରୟୋଗର ନିର୍ଦ୍ଦେଶ ରହିଛି । ଏଥିରୁ ମଧ୍ୟ କାବ୍ୟର ସୃଷ୍ଟି ଉପର ନିର୍ଭର କରେ ବୋଲି ଜଣାପଡୁଅଛି । ରସଲେଖାରେ ଗୋଟିଏ ପଦରେ, ରସିକ ହାରାବଳୀରେ ଦ୍ୱାବିଂଶ ପଦରେ, ପ୍ରେମ ସୁଧାନିଧିରେ ଚଉଷଠି ପଦରେ, ସୁଭଦ୍ରା ପରିଣୟରେ ତେର ଗୋଟି ପଦରେ, ଲାବଣ୍ୟବତୀରେ ଦଶ ଗୋଟି ପଦରେ, ବୈଦେହୀଶ ବିଳାସରେ ୭୩ ଗୋଟି ପଦରେ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ନଅ ଗୋଟି ପଦରେ ଅଳଙ୍କାର ନିର୍ଦ୍ଦେଶ ରହିଛି ।୧୨।

ଏହି ଅଳଙ୍କାର ନିର୍ଦ୍ଦେଶରୁ ମନେ ହୋଇପାରେ ଲାବଣ୍ୟବତୀ ପରେ ସୁଭଦ୍ରା ପରିଣୟ ଏବଂ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରେ ବୈଦେହୀଶ ବିଳାସ ସୃଷ୍ଟି ହୋଇଥିବ । କିନ୍ତୁ ଗଭୀର ଭାବେ ଅନୁଧ୍ୟାନ କଲେ ଏ ସାମାନ୍ୟ ଭ୍ରମ ଦୂର ହୋଇ ପାରିବ । ଉକ୍ତ ଲାବଣ୍ୟବତୀ କାବ୍ୟକୁ ସରଳ, ସୁନ୍ଦର ଏବଂ ସରସ ରୂପେ ଗଢିବାକୁ ଚାହିଁଥିବା ତାଙ୍କ କାବ୍ୟାଦର୍ଶରୁ ସ୍ପଷ୍ଟ ହୁଏ । ଏ କାବ୍ୟରେ ଅଳଙ୍କାର କମ୍ ନାହିଁ । କିନ୍ତୁ ଶବ୍ଦାଳଙ୍କାରର ଅନୁପାତ କମ୍ । ପୁଣି ଏପରି କେତେକ ବର୍ଣ୍ଣନା ରହିଛି ଯାହାକୁ ଲକ୍ଷ୍ୟ

କବେ ଆମେ ସ୍ପଷ୍ଟ ଉପଲବ୍ଧି କରିପାରିବା ଯେ, କବିଙ୍କ ଲାବଣ୍ୟବତୀର ବର୍ଣ୍ଣନା ସୁଭଦ୍ରା ପରିଣୟ ଅପେକ୍ଷା ଅଧିକ ହୃଦ୍ୟ, ଉତ୍କର୍ଷକ ଓ କବିତ୍ୱର ଦ୍ୟୋତକ । ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ, ଉଭୟ କାବ୍ୟର ହୋଇଥିବା ରାଜାଙ୍କ ଯାତ୍ରାରେ ସୈନ୍ୟଙ୍କ ପ୍ରସ୍ତୁତି ଓ ମନୋଭାବର ଚିତ୍ରଣ ତଥା ଯୁଦ୍ଧର ଭୟାବହିକା ବର୍ଣ୍ଣନା ।୧୩। ଏ ସ୍ଥଳରେ ସମାନ ବର୍ଣ୍ଣନାର କେତେଗୋଟି ଉଦାହରଣ ଦିଆଯାଇଅଛି । ଯାହା ସାହାଯ୍ୟରେ ଉଭୟ କାବ୍ୟର ସୃଷ୍ଟିକ୍ରମ ଉପଲବ୍ଧି ସହଜ ହେବ ।

ଗର୍ଭବର୍ଣ୍ଣନ ।ସ୍ୱ- ସ୍ୱର୍ଣ୍ଣ ହାରେ ଦିଶିଲି ପ୍ରାନ୍ତ ହେଲ କାନ୍ତ ।

(ସୁ-ପରିଣୟ ୧-୪୧)

କାନ୍ତି ସୁବର୍ଣ୍ଣ ଦୋହଦେ ପାଣ୍ଡୁର ମିଶିଲା ।

ରଜତ ପିଣ୍ଡୁଳା ତୁଲ୍ୟ ଅବଳା ଦିଶିଲା । (ଲା ବତୀ ୨-୪୦)

ନାରୀକୁ ରଥ ରୂପରେ କଳ୍ପନା —

ସମୀରେ ଚଂଚଳ ଅଞ୍ଚଳ ପତାକା ଚକ୍ର ଉରୋଜ ପ୍ରମାଣ,
ସଚଳ ଜଘନ ରଥର ଲଲାଟ କମଳ ବୃନ୍ଦ ଦରପଣ ।
ସନ୍ନତ ଯଷ୍ଟି ନୟନ ଭଦ୍ରାସନ ।
ସଜଳ ଘଣ୍ଟ ମଣ୍ଡଳରେ ତୁରଗ ମକର ମକର କେତନ ।

(ସୁ-ପରିଣୟ ୪-୨)

ଲଲାଟ କମଳ ବୃନ୍ଦ ଦରପଣ ଚକ୍ର ସ୍ତନର ଯନ୍ତ୍ରିରେ
ତରଙ୍ଗ କୁରଙ୍ଗ ନୟନ ଭୁଜଙ୍ଗ କଙ୍କଣ କରଇ ଯନ୍ତ୍ରିରେ ।
କଦଳ ତଟ କୁଚ ଶ୍ରୋଣୀ ଚଟୁଳ ।
କଟି ମେଖଳା ଘଣ୍ଟି ଯଷ୍ଟି ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ

(ଲା-ବତୀ-[illegible]-୮)

ଉଭୟ ପଦର ରେଖାଙ୍କିତ ପଦକୁ ଲକ୍ଷ୍ୟକଲେ ଲାବଣ୍ୟବତୀରେ ଅଧିକ ଉପମେୟର ଚିତ୍ରଣ ହୋଇଥିବା ଜଣାଯାଏ ।

ଜଳର ଶୀତଳତା—ସୁଧାଂଶୁଁ ଶୀତ ଗୁଣରେ ସବୁ ପ୍ରକାରେ ହନ୍ତ ।

(ସୁ-ପ-୫-୧୭)

ମଧୁର ସେ ହ୍ରଦକୁ ମଧୁର କରେ ଶୀତଳ ପଣେ ।

(ଲ-ବଷ୍ଠ-୬-୮)

ଜଳର ନିର୍ମଳତା ଓ ସ୍ୱାଦୁତା—

ସେ ଜଳେ ଆଦର ଛଡ଼ାଇଅଛି ଦର୍ପଣୁ ସତ

ସ୍ୱାଦେ ହାର ମିଳ ହୋଇଛି ଯାହା ସଙ୍ଗେ ଅମୃତ । (ସୁ-ପ-୨-୧୭)

ଜଳ ନିର୍ମଳରେ ଆଦର ଆଦର୍ଶଣୁ ସାଗନ୍ତି (ଲ-ବ-୭-୭)

ଅମୃତ ସ୍ୱାଦରେ ହୋଇଛି ମିତ ମଧୁର ଗୁଣେ । (ଲ-ବ-୭-୮)

ଏହିପରି ବହୁ ଉଦାହରଣ ଦେଇ ପ୍ରମାଣ କରାଯାଇପାରେ ଯେ, କବିଙ୍କ ଉପସ୍ଥାପନ କୌଶଳ ସୂକ୍ଷ୍ମଦୃଷ୍ଟିପରିଚୟ ଅପେକ୍ଷା ଲାବଣ୍ୟବତୀରେ ଅପେକ୍ଷାକୃତ ଅଧିକ ମନୋହର ଓ ଶବ୍ଦ ପ୍ରୟୋଗରେ କବିଙ୍କ କୃତିତ୍ୱ ବେଶି । କେତେପରି ବୈଦେହୀଶ ବିଳାସରେ ଅଳଂକାର ସଂଯୋଜନ ଚାତୁର୍ଯ୍ୟାଦର୍ଶ ଦୃଷ୍ଟିରୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଅପେକ୍ଷା ଅଧିକତର । ପୂର୍ବରୁ କୁହାଯାଇଛି ଯେ, କବି ରୀତି ମାର୍ଗକୁ ଅବଲମ୍ବନ କରି ପ୍ରସିଦ୍ଧ ରାମାୟଣ ଚରିତ ନିର୍ମାଣ କରିଛନ୍ତି । ଏ ସ୍ଥଳରେ ମନ୍ତ୍ରୀର ସତ୍ତ୍ୱକୁ ଉତ୍କର୍ଷ କରିବା ଉଚିତ ମନେ କରେ ଯେ, କବି ପ୍ରତିଦ୍ୱନ୍ଦୀ ଚରିତ୍ରଗୁଡ଼ିକର ସମ୍ମୁଖୀନ ହୋଇ ବା ଭ୍ରାନ୍ତ ଉତ୍ସାହରେ ଅନୁପ୍ରାଣିତ ହୋଇ ଅତ୍ୟଧିକ ଅଳଂକାର ସନ୍ନିବେଶରେ କାବ୍ୟ ଗୌରବକୁ କ୍ଷୁଣ୍ଣ କରିଛନ୍ତି । ଫଳରେ ତାଙ୍କର ଏହି କାବ୍ୟଟି ଧ୍ୱନି ପ୍ରଧାନ ଉତ୍ତମ କାବ୍ୟ କୋଟିରୁ ଗୁଣୀଭୂତ ବ୍ୟଙ୍ଗ୍ୟ ସ୍ତରକୁ ଖସି ଆସିଛି । ଏହି ଅଳଂକାର ସନ୍ନିବେଶ ହେତୁ ସ୍ଥଳ ବିଶେଷରେ ବାଚ୍ୟାର୍ଥ ବ୍ୟଙ୍ଗ୍ୟାର୍ଥ ଅପେକ୍ଷା ଅଧିକ ଚମତ୍କାର ହୋଇଯାଇଛି । (୯ ।

## (ଚ) ଅଳଂକାର ସଂଯୋଜନ –

କାବ୍ୟର ବୈଶିଷ୍ଟ୍ୟ ସୌନ୍ଦର୍ଯ୍ୟ ବୋଧଯୁକ୍ତ ତତ୍ତ୍ୱ ମଧ୍ୟରେ ଅଳଂକାରର ସ୍ଥାନ ସର୍ବୋପରି । ସାମାନ୍ୟ ଅର୍ଥରେ ଅଳଂକାର କାବ୍ୟର ସମସ୍ତ ସୌନ୍ଦର୍ଯ୍ୟ ତତ୍ତ୍ୱର ଅବବୋଧକ, ତେଣୁ ବାମନ କହନ୍ତି -- ସୌନ୍ଦର୍ଯ୍ୟ ମଳଂକାରଃ ।୧୬। କିନ୍ତୁ ବିଶେଷ ଅର୍ଥରେ ଅଳଂକାର ଶବ୍ଦାର୍ଥର ଧର୍ମ ବିଶେଷ ଓ କାବ୍ୟାତ୍ମା ରସର ପରିପୋଷକ ।୧୭। ବିଶିଷ୍ଟ ଆଳଂକାରିକ ଆଚାର୍ଯ୍ୟଙ୍କ ବିଚାର ସରଣୀକୁ ଅନୁସରଣ କରି କବି ଉପେନ୍ଦ୍ର ଅଳଂକାର ପ୍ରଧାନ କାବ୍ୟ ନିର୍ମାଣ ଢଙ୍ଗରେ ପ୍ରବୃତ୍ତ ଥିବା ଅନୁମିତ ହୁଏ । ବୋଧହୁଏ ଉପେନ୍ଦ୍ରଙ୍କ ଶୈଳୀର ଅନୁଗାମୀ ହେଲେ ଅଭିମନ୍ୟୁ ସାମନ୍ତ ସିଂହାରଙ୍କୁ ଛାଡ଼ିଦେଲେ ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ରଙ୍କ ସମକକ୍ଷ ଅଳଂକାର ସୃଷ୍ଟିକର୍ତ୍ତା ଦୁର୍ଲ୍ଲଭ । ଉପେନ୍ଦ୍ରଙ୍କ କାବ୍ୟ ପ୍ରଯୁକ୍ତ ଅଳଂକାରର ପରିମାଣକୁ ଆଧାର କରି କାବ୍ୟ ସୃଷ୍ଟିକ୍ରମ ନିର୍ଣ୍ଣୟ କରାଯାଇପାରେ । ନିମ୍ନରେ ଆଲୋଚିତ ପାଞ୍ଚଗୋଟି କାବ୍ୟର ଗ୍ରନ୍ଥ ସଂଖ୍ୟା, ପଦସଂଖ୍ୟା ଶବ୍ଦାଳଂକାର ତଥା ଅର୍ଥାଳଂକାର ସଂଖ୍ୟା ପ୍ରଦତ୍ତ ହୋଇଛି । ୧୭ ।

ଅଳଂକାର ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ପଦ ସଂଖ୍ୟା ସମ୍ବନ୍ଧରେ ସାମାନ୍ୟ ସୂଚନା ଦିଆଯିବା ଅସଙ୍ଗତ ହେବ ନାହିଁ । ଏ ମଧ୍ୟରୁ କବି ନିମ୍ନଲିଖିତ କେତେକ କାବ୍ୟର ପଦ ନିର୍ଦ୍ଦେଶ କରିଛନ୍ତି ।

ରସଲେଖା – ଏହୁ ଗୀତ ଦ୍ୱାବିଂଶ ଛାନ୍ଦ-ନିବନ୍ଧ ଅଛି ଷଟଶତଷଷ୍ଟୀ ପଦ- (୨୨-୧୯)

ରସିକହାରାବଳୀ – ପଦ ସଂଖ୍ୟାରେ ତିନିଶ ପଞ୍ଚଷଠି ଜାଣ-(୧୦-୨୦)

ପ୍ରେମସୁଧାନିଧି – ଏ ପ୍ରବନ୍ଧ ତିନିଶତ ପଞ୍ଚାଶୋଇ ପଦ
ସଦନ କଲୁ ଉତ୍ତମ ଜନଙ୍କର ହୃଦ- (୧୭-୨୩)

ସୁଭଦ୍ରାପରିଣୟ – ସାତଶ ଚଉବିଂଶ ପଦେ ପୂର୍ଣ୍ଣ- (୧୭-୨୩)

ଲାବଣ୍ୟବତୀ – ଏ ପ୍ରବନ୍ଧ ଦୁଇ ସହସ୍ର ତିନିଶ
ଷାଠିଏ ଏକ ପଦରେ ଶେଷ-(୪୮-୬୮)

ଉପର୍ଯ୍ୟୁକ୍ତ କାବ୍ୟଗୁଡ଼ିକର ପ୍ରତି ଛାନ୍ଦ ଶେଷରେ ବୃତ୍ତର ନିର୍ଦ୍ଦେଶ ରହିଛି ।

ବୈଦେହୀଶ ବିଳାସର କେତେକ ଛାନ୍ଦ ଶେଷରେ ପଦ ନିର୍ଦ୍ଦେଶ ରହିଛି । କିନ୍ତୁ ଶେଷରେ ସମଗ୍ର କାବ୍ୟର ପଦ ସଂଖ୍ୟା ନିର୍ଦ୍ଦେଶ ନାହିଁ । କିନ୍ତୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ପ୍ରତି ଛାନ୍ଦ ଶେଷରେ କିମ୍ବା କାବ୍ୟ ଶେଷରେ କୁତ୍ରାପି ପଦସଂଖ୍ୟା ନିର୍ଦ୍ଦେଶର ସୂଚନା ନାହିଁ । ଏ ପ୍ରସଙ୍ଗରେ ଏତିକି କୁହାଯାଇପାରେ ଯେ, ଧୀରେ ଧୀରେ କବି ପଦସଂଖ୍ୟା ନିର୍ଦ୍ଦେଶକୁ ଛାଡ଼ି ଦେଇଥାଆନ୍ତି ଏବଂ ଶେଷ କାବ୍ୟରେ ଆଦୌ ନିର୍ଦ୍ଦେଶ ନାହିଁ । ଏହା ମଧ୍ୟ ଏକ ବିଶିଷ୍ଟ କାରଣ ଯାହାକି ଅନୁକ୍ରମିକତା ନିର୍ଣ୍ଣୟ ଦିଗରେ ଗ୍ରହଣ କରାଯାଇପାରେ ।

ନିର୍ଦ୍ଦେଶିତ କାବ୍ୟଗୁଡ଼ିକ ମଧ୍ୟରୁ ପ୍ରଥମ ତିନି ଗୋଟିରେ ଧୀରେ ଧୀରେ ଶବ୍ଦାଳଂକାର ସଂଖ୍ୟା କମିବା ପରିଲକ୍ଷିତ ହୁଏ । କିନ୍ତୁ ଲାବଣ୍ୟବତୀ କାବ୍ୟରେ ଶବ୍ଦାଳଂକାରଠାରୁ ଅର୍ଥାଳଂକାରର ଅନୁସୃତିର ଅଭିବୃଦ୍ଧି ହିଁ ସେ କାବ୍ୟକୁ ବିଶେଷ ସୁନ୍ଦର ଓ ମର୍ଯ୍ୟାଦା ଦାନ କରିଅଛି । ବୈଦେହୀଶ ବିଳାସରେ ଏକକ ମାର୍ଗକୁ ଅବଲମ୍ବନ କରିଥିବାରୁ ଅଳଂକାର ପ୍ରାଚୁର୍ଯ୍ୟ ପରିଦୃଷ୍ଟ ହୁଏ । ଯାହା ଆଗରୁ ଆଲୋଚିତ ହୋଇଛି ।

ଉପର୍ଯ୍ୟୁକ୍ତ ବିଷୟରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଭଞ୍ଜଙ୍କ କାବ୍ୟରେ ସାମଗ୍ରିକ ଭାବେ ଶବ୍ଦାଳଂକାର ଅପେକ୍ଷା ଅର୍ଥାଳଂକାର ଅଧିକ ସଂଯୋଜିତ । କିନ୍ତୁ ଯେଉଁମାନେ ଭଞ୍ଜଙ୍କ କାବ୍ୟରେ ଅର୍ଥାଳଂକାର ବେଶି ବୋଲି ମତ ଦିଅନ୍ତି, ସେମାନେ ବୋଧହୁଏ ଭଞ୍ଜ ସାହିତ୍ୟକୁ ଅନୁଧ୍ୟାନ କରିନାହାନ୍ତି । ଅଥବା ଅନ୍ୟ ଏକ କାରଣ ହୋଇପାରେ ଯେ, ଅନୁପ୍ରାସ, ଯମକ ପ୍ରଭୃତି ଶବ୍ଦାଳଂକାର କେବଳ ପାଠ ମାତ୍ରେ ଯେପରି ପାଠକ ହୃଦୟକୁ ସ୍ପର୍ଶ କରେ ଉପମା-ରୂପକାଦି ଅର୍ଥାଳଂକାର ସେପରି ଅବବୋଧ ହୁଏନାହିଁ । ତାହା ଅନୁଧ୍ୟାନ ଓ ଅନୁଶୀଳନ ସାପେକ୍ଷ । ଅଥବା ମତଦାତାମାନେ କେବଳ ପ୍ରେମ ସ୍ୱାଦକୁ ଦୃଷ୍ଟିରେ ରଖି ମନ୍ତବ୍ୟ ପ୍ରଦାନ କରିଛନ୍ତି ।

କେବଳ ବୈଦେହୀଶ ବିଳାସକୁ ବାଦ ଦେଲେ ଅଳଂକାର ସଂଖ୍ୟା ଆଧାରରେ ମଧ୍ୟ କାବ୍ୟଗୁଡ଼ିକର ନିର୍ଣ୍ଣୀତ ସୃଷ୍ଟିକ୍ରମରେ ବ୍ୟତିକ୍ରମ ପରିଲକ୍ଷିତ ହୁଏ ନାହିଁ । କାବ୍ୟଗୁଡ଼ିକର ଆନୁପୂର୍ବିକତା ନିର୍ଣ୍ଣୟ ପାଇଁ ଯେଉଁ ଆଧାରଗୁଡ଼ିକ ଗ୍ରହଣ କରାଯାଇଛି, ସମସ୍ତ ଆଧାର ସେହି ଏକ ଲକ୍ଷ୍ୟକୁ ସାଧନ କରୁଛନ୍ତି ।

## (ଛ) ଉପମାନର ସଂଯୋଜନ

ପରିଶେଷରେ ଉକ୍ତ କାବ୍ୟଗୁଡ଼ିକରେ ସଂଯୋଜିତ ଉପମାନକୁ ଆଧାର କରି ଏହି କ୍ରମର ପୁଷ୍ଟି ସାଧନ କରାଯାଉଛି ।

ତତ୍ତ୍ୱବିଦମାନେ କହନ୍ତି—କବି ସ୍ୱୀୟ ଅନୁଭୂତ ଭାବରେ ପରିପ୍ରକାଶ, ସଂପ୍ରସାରଣ ଓ ସ୍ୱଚ୍ଛତା ପ୍ରଦର୍ଶନ ପାଇଁ ଉପମାନର ସାହାଯ୍ୟ ନେଇଥାନ୍ତି । ଉପମାନର ବ୍ୟଞ୍ଜକତା ଓ ଅର୍ଥ ବ୍ୟାପ୍ତି ହିଁ ଉପମେୟ ବା ବର୍ଣ୍ଣିତ ବସ୍ତୁକୁ ଅଧିକ ମନୋଜ୍ଞ ଓ ହୃଦୟସ୍ପର୍ଶୀ କରେ । ସେ ଦୃଷ୍ଟିରୁ ଭଞ୍ଜଙ୍କ କାବ୍ୟର ଉପମା ଅଧ୍ୟୟନ କରିଯାଇ କାବ୍ୟଗୁଡ଼ିକର ସୃଷ୍ଟିକ୍ରମ ନିର୍ଣ୍ଣୟ କରାଯାଇ ପାରେ ।

ଉପମା ହିଁ ପ୍ରାୟ ସମସ୍ତ ଅର୍ଥାଳଂକାରର ମୂଳ । ଉପମାର ଏହି ବୈଶିଷ୍ଟ୍ୟ ଓ ବ୍ୟାପ୍ତି ଲକ୍ଷ୍ୟ କରି ଆଚାର୍ଯ୍ୟ ଦଣ୍ଡୀ, ଅପ୍ପୟଦୀକ୍ଷିତ, ପଣ୍ଡିତରାଜ ଜଗନ୍ନାଥ ପ୍ରଭୃତି ଆଳଂକାରିକ ଉପମାକୁ ଅନେକ ଭେଦଶାଳିନୀ ଓ ଅର୍ଥାଳଂକାରର ମୂଳ ଭାବେ ଗ୍ରହଣ କରିଛନ୍ତି । ଅପ୍ପୟ ଦୀକ୍ଷିତଙ୍କ ମତରେ ଉପମା ହିଁ ଶୈଳୂଷୀ ନଟୀ ଯେ କି ବିବିଧ ଭୂମିକା ଗ୍ରହଣ କରି କାବ୍ୟ ରଙ୍ଗମଞ୍ଚରେ ନୃତ୍ୟ କରିବା ସଙ୍ଗେ ସଙ୍ଗେ କାବ୍ୟମୋଦୀ ସହୃଦୟ ଚିତ୍ତକୁ ରଞ୍ଜିତ କରେ ।[୮]

ସେହି ଉପମାକୁ ଉପଜୀବ୍ୟ କରି କବି ଉପମା, ରୂପକ, ଦୃଷ୍ଟାନ୍ତ, ଅତିଶୟୋକ୍ତି, ଉତ୍ପ୍ରେକ୍ଷା, ଭ୍ରାନ୍ତିମାନ୍‌, ବ୍ୟତିରେକ ପ୍ରଭୃତି ଅଳଂକାର ମାଧ୍ୟମରେ କାବ୍ୟ କାମିନୀକୁ ବିଭୂଷିତ କରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସୃଷ୍ଟି କରିଛନ୍ତି । ସେ ମଧ୍ୟରେ କେତେକ ବିଶିଷ୍ଟ ଉପମାନ ସମସ୍ତ କାବ୍ୟରେ

ବ୍ୟବହୃତ । ଅନ୍ୟ କେତେକ ଉପମାନ କେବଳ ନିର୍ଦ୍ଦିଷ୍ଟ କେତେକ କାବ୍ୟରେ ବ୍ୟବହାର କରାଯାଇଛି । ବୋଧହୁଏ କବିଙ୍କ ଶାସ୍ତ୍ର ଅଧ୍ୟୟନ ଜନିତ ପ୍ରତିଭାର ବିକାଶ ସଙ୍ଗେ ସଙ୍ଗେ ନୂତନ ଉପମାନ ସବୁ ପରବର୍ତ୍ତୀ କାବ୍ୟରେ ପ୍ରବେଶ କରିଥିବ ଓ ପୂର୍ବବର୍ତ୍ତୀ କାବ୍ୟରେ ସଂଯୋଜିତ ପୁରାତନ ଉପମାନ ପରିତ୍ୟକ୍ତ ହୋଇଥିବ । ଉଦାହରଣ ସାହାଯ୍ୟରେ ସେହି ପ୍ରୟୋଗ ବୈଶିଷ୍ଟ୍ୟ ପ୍ରଦର୍ଶନ କରାଯାଉଛି ଓ ଏହାକୁ କାବ୍ୟ ସୃଷ୍ଟି କ୍ରମ ନିର୍ଦ୍ଦେଶରେ ମୁଖ୍ୟ ମାନଦଣ୍ଡ ଭାବେ ଗ୍ରହଣ କରାଯାଉଛି ।

ନାୟିକାକୁ ଅଣିମାଦି ସୁନ୍ଦର, ଆଧାର ରୂପେ ସେ ସମସ୍ତ କାବ୍ୟରେ ବର୍ଣ୍ଣନା କରିଛନ୍ତି । କିନ୍ତୁ ଅଭେଦ ମିଳନ ପାଇଁ 'ନୀର-କ୍ଷୀର' ଉପମାକୁ ରସଲେଖା ବ୍ୟତୀତ ଅନ୍ୟ ସମସ୍ତ କାବ୍ୟରେ ଗୃହୀତ ହୋଇଛି । ମନ୍ମଥଙ୍କ ନାରୀକୁ 'ରଥ' ସହିତ ତୁଳନା କରି ରସଲେଖା ବ୍ୟତୀତ ଅନ୍ୟ କାବ୍ୟ ଗୁଡ଼ିକରେ ସୌନ୍ଦର୍ଯ୍ୟ ସୃଷ୍ଟି କରାଯାଇଛି, ଯଥା—

ମନମଥରଥ ବରତନୁଙ୍କୁ ସାଜିଲଣି ମନେ ଗଣରେ । (ର-ହା-୨-୪)

ସାଜିଛି ଏମନ୍ତ ରଥ ମନମଥ ମନୋରଥ ଜଙ୍ଘଯୁଗ୍ମକୁ (ସୁ-ପ-୪-୧)

ମନମଥରଥ ଯାହା କି ହୋଇଛି ପଥ ମନୋରଥ ପୂରଇ (ଲ-ବ-୫-୭)

କାମଦେବର ସେ ରଣେ ହାରିଲା, ତନୁ ତା'ରଥ କି ବେଢ଼ିଥିଲା
(ବୈ-ଚ-୧୫-୨୭)

ଯାଞ୍ଚିଲା ଚନ୍ଦ୍ରରଥ ଏଥି (କୋ-ବ୍ର-ସୁ ୧-୩୭)

କେବଳ ନମୁନା ସ୍ୱରୂପ କେତୋଟି ଉଦାହରଣ ଦିଆଯାଇଛି । ଅନ୍ୟ ଅନେକ ଉଦାହରଣ ସଂଗ୍ରହ କରାଯାଇ ପାରେ । ପୁଣି କେତେକ ଉପମାନ ରସଲେଖା ଓ ରସିକ ହାରାବଳୀରେ ନାହିଁ । ତରୁଣୀକୁ ଚନ୍ଦ୍ରଲୋକ ଓ ଚନ୍ଦନାଦି ଉପଚାରକୁ ଫଳ ସହିତ ତୁଳନା କରାଯାଇଛି ।

ଚନ୍ଦନାଦି ଉପଚାର, ହୋଇଛି ଯେତେ ଲୋହେ ଜନ୍ମାଇ ପ୍ରକାର
(ପ୍ରେ-ସୁ-୧୪-୯)

ଶୁଣିଯାଏ ଚନ୍ଦନ ଅଙ୍ଗେ କଲେ ଲେପନ ତପତ ଲୋହେ
(ସ୍ୱ-ପ-୮-୨୧)

ଭଗତ ଲୋଡେ ଜମ୍ବାଳ ପରସ୍ପେ ଶୁଝଇ (ଲ-ବ-୧୭-୨୮)

ସେହିପରି ଅନ୍ଧ ଉପମାନଟି—

ନ ଆଁ ଅନ୍ଧ ପ୍ରାପ୍ତେ ହୋଇ...(ପ୍ରେ-ସୁ-୧୪-୩)

ସ୍ୱଳ୍ପ ତପେ ଜନ୍ମାନ୍ଧ ପାଇଲା ଦିବ୍ୟ ଆଖି (ସୁ-ପ ୧୩-୩)

ଏ ଭାବରେ ସ୍ୱଂସ୍ଥାରେ ସମାବେଶପାଇ, ଜନ୍ମଅନ୍ଧ ନୟନକୁ ଲଭିଲେ ଯେମନ୍ତ (ଲ-ବ-୧-୪୧) ଅବଶ୍ୟ ଏହି 'ଚନ୍ଦ୍ରବିହୀନ' ଓ 'ଅନ୍ଧ' ଉପମାନ ଦୁଇଟି ବୈଦେହୀଶ ବିଳାସ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ମଧ୍ୟ ନାହିଁ । ତେବେ କୃପାପାଇ ପାରେ ପରବର୍ତ୍ତୀ କାବ୍ୟରେ ଏହାକୁ ବ୍ୟବହାର ନ କରି କବି ପ୍ରତିଭା ବିକାଶର କ୍ଷିପ୍ର ପରିଚୟ ଦେଇଛନ୍ତି ।

ପୁଣି 'ଜାତଚରଣ' ଉପମାନଟି ପ୍ରଥମୋକ୍ତ ତିନୋଟି କାବ୍ୟରେ ନାହିଁ ।

ଯଥା— ଶ୍ରେଷ୍ୟ ଜାତକ ଚଳ ଉତ୍ପାଦ,
ସାକ୍ଷାତ୍ସ ଯଥା ଜଡ ଦୃଷ୍ଟି ଚହିଁ । (ସୁ-ପ-୩-୨)

ସଙ୍କେତ ଦମ୍ଭ ମେଘ ଉଭକୁ ଫେଣ,
ଜରେଷ୍ଟ ଜାଲଜରତ୍ନ ଯଥା ନରୁକ୍ତ (ଲ-ବ-୯-୨୩)

ବର ଜାତକଚଣ୍ଡୀ ଶ୍ଳେଷଭଙ୍ଗ ଯେମନ୍ତ କ୍ଷୁଦ୍ରିକା ।
(ବୈ-ବି-୧୭-୪୭)

ଜାତକଚଣ୍ଡୀ କ ଜଳଭୂଷା ଟେକ ଦେଖିଥିଲା ପଦ୍ମ ଚହୁଁ
(କୋ-ବ୍ର-ସୁ-୩୦-୨୭)

ପୁଣି ଅନ୍ୟାନ୍ୟ ସୁନ୍ଦର ଶିରୋମଣିଙ୍କୁ ଭାବ୍ୟନାପ୍ତି ଭାବ ଚରଣପଣା ପଥର ସଙ୍ଗେ ତୁଳନା, ରୂପଲେଖା, ରସିକ ହାରାବଳୀ ଓ ପ୍ରେମସୁଧା ନିଧିରେ ନାହିଁ । ଯଥା —

ସର ଚରଣେ ସଷା ଶିଳାକୁ କନ୍ଦଷ (ସୁ-ଗ-୩-୨)
ଏ ଘୋଷା ଯୋଗ୍ୟ ନୋହେ ତା ପଦ ଷଷା ଉପଳ ଉପମା ଦେବାକୁ ।
(ଲ-ବ-୯:୨୩)

କତକି ଏ ସୀତାର ଚରଣ ଷଷା ଏତ୍ତ (.ବୈ.ବ.୭.୧୭)
କଲୁ ଦେଲ୍ଲ କାଳେ ଶିଳା ପଦଷା, ସମାଚରଣ ଷଷା ଭଳ ଷତ ।
(କୋ:ବ୍ର:ସୁ:୭:୨)

ଲକ୍ଷ୍ୟ କଲେ ଦେଖାଯାଏ 'ଜୀବନଯିବ' ଶବ୍ଦର ଦ୍ୱିବଧ ପ୍ରୟୋଗ (ଜୀବନ-ଯିବ, ଜୀବ-ନଯିବ) କେବଳ ଶେଷୋକ୍ତ ଷନଗୋଟି କାବ୍ୟରେ ଶ୍ଳେଷରେ କରାଯାଇଛି ।

ଜୀବନ ଯିବ ପାଇଲେ ନ ପାଇଲେ, (ଲ:ବ:୨୦.୮)

ଜୀବନ ଯାଉ ହୋଇଲେ ନୋହିଲେ ଏ ବର (ବୈ-ବି-୯-୩୬)
ଘନ ସ୍ତନର ଯୋଗେ ଜୀବନ ଯିବ (କୋ-ବ୍ର-ସୁ-୨୦-୧୮)

ସେତ୍ତପର ନାୟିକୁ ସାମୁଦ୍ରିକ 'ବତ୍ତିଶଲକ୍ଷଣା' ରୂପରେ ଉପସ୍ଥାପନ କେବଳ ନମ୍ନୋକ୍ତ କାବ୍ୟ ଦୁଇଟିରେ ହୋଇଅଛି । ୧୯ ।

ବତ୍ତିଶଲକ୍ଷଣା ପୁଷ ଯେ (ବୈ-ବ-୧୦-୧୯)
ଭୁରେ ବତିଶ ଲକ୍ଷଣ ସୀମା (କୋ-ବ୍ର-ସୁ—୧୭-୧୯)

କାବ୍ୟ ନାୟିକାକୁ ବତିଶ ଲକ୍ଷଣ ବଶିଷ୍ଟା ଶ୍ରେଷ୍ଠା ନାୟିକା ରୂପେ କେବଳ ଦୁଇଗୋଟି କାବ୍ୟରେ କରାଯାଇଛି । ୨୦ । ବର୍ତ୍ତମାନ ପ୍ରଶ୍ନ ଉଠେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ବୈଦେହୀଶ ବଳାସ ମଧ୍ୟରେ କାହାର ସୃଷ୍ଟି ପ୍ରଥମ ? ତେବେ ଏ ଦୁଇଟିର ସୃଷ୍ଟିକ୍ରମ ନର୍ଣ୍ଣୟ ପାଇଁ ଉପମାନ ଅପେକ୍ଷା ଉପସ୍ଥାପନକୁ ଆଧାର ରୂପେ ଗ୍ରହଣ କରିବା ଅଧିକ ସମୀଚୀନ ହେବ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଅଂଶଗ୍ରନ୍ଥ ଓ ଚଉଅଂଶଗ୍ରନ୍ଥ ଅନନ୍ତ ରମଣୀୟ ପାଣ୍ଡିତ୍ୟର ଦ୍ୟୋତକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଂଶ ଗ୍ରନ୍ଥରେ କଳହଂସ କେଦାର ଏବଂ ଭୂପାଳ ରାଗର ଏକତ୍ର ମିଶ୍ରଣ ଓ ନାୟକ ନାୟିକାର ନେତ୍ରାଳଂକାର ଆଧାରରେ ଏକଶ ବର୍ଣ୍ଣନା ଯେପରି ପ୍ରଚଣ୍ଡ ପାଣ୍ଡିତ୍ୟର ବାହକ ସେହିପରି ପଞ୍ଚ ଅଂଶଗ୍ରନ୍ଥରେ ଚନ୍ଦ୍ରାଦେଶାଷ୍ଟ, କାଫିକାମୋଦୀ ଓ ମାଳବଗଉଡ଼ ରାଗରେ ତିନିଗୋଟି ଋତୁ ଯଥା ବର୍ଷା, ଶୀତ ଓ ଗ୍ରୀଷ୍ମର ବର୍ଣ୍ଣନା ଅଲୌକିକ ଶକ୍ତିର ପରିଚୟ । ଏଥିରେ ବୃଦ୍ଧି, ଉଦ୍ଭବ, ଶବ୍ଦଜ୍ଞାନ ଓ ସଂଯୋଜନ କୌଶଳ ଅନନ୍ୟ ସାଧାରଣ । ଅବଶ୍ୟ ଏଥିରେ ଥିବା ଶବ୍ଦ କସରତ ଯେତିକି କବିଙ୍କ ପାଣ୍ଡିତ୍ୟ ବ୍ୟକ୍ତ କରେ ସେତିକି କାବ୍ୟ ପ୍ରତିଭା କ୍ଷୁର୍ଣ୍ଣ କାରକ । ତଥାପି କବିଙ୍କ ନୈପୁଣ୍ୟ ଯେ, ଅନସ୍ୱାଦ ଏଥିରେ ସନ୍ଦେହ ନାହିଁ । ଏପରି ଶବ୍ଦ ପାଣ୍ଡିତ୍ୟର ଦ୍ୟୋତନା ବୈଦେହୀଶ ବିଳାସରେ ନାହିଁ ।

## (ଜ) ପ୍ରଯୁକ୍ତ ଉପମାନର ସଂଖ୍ୟା —

କାବ୍ୟ ପ୍ରଯୁକ୍ତ ଉପମାନର ସଂଖ୍ୟାକୁ ଲକ୍ଷ୍ୟ କଲେ ମଧ୍ୟ ଏ ସାତଗୋଟି କାବ୍ୟ ମଧ୍ୟରେ ରସଲେଖା ପ୍ରାଥମିକ କାବ୍ୟ ଶ୍ରେଣୀର ମନେ ହୁଏ । କାରଣ ଉପେନ୍ଦ୍ରଙ୍କ ପାଣ୍ଡିତ୍ୟ ବିକାଶ ସହିତ ଉପମାନ ଗୁଡ଼ିକର ପ୍ରୟୋଗ ଓ ବ୍ୟାପ୍ତି ବର୍ଦ୍ଧିତ ହୋଇଥିବା ଯଥେଷ୍ଟ ସମ୍ଭାବନା ରହିଛି । ୨୧ ।

ଉପର୍ଯ୍ୟୁକ୍ତ ବୈଶିଷ୍ଟ୍ୟକୁ ଆଧାରରେ କବିଙ୍କ ଅନ୍ୟାନ୍ୟ ସୃଷ୍ଟିକୁ ରସଲେଖାର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ନିର୍ଣ୍ଣୟ କରାଯାଇ ସମୟ ନିର୍ଦ୍ଧାରଣ କରାଯାଇ ପାରେ । ଏହାଦ୍ୱାରା ନିର୍ଦ୍ଦିଷ୍ଟ ବର୍ଷ, ମାସ ବା ତାରିଖ ନିର୍ଣ୍ଣୟ ନ ହୋଇ ପାରିଲେ ମଧ୍ୟ କବି ପ୍ରତିଭାର କ୍ରମ ବିକାଶ ସହିତ ଗ୍ରନ୍ଥ ରଚନାର କ୍ରମବିକାଶକୁ ପ୍ରକାଶ କରାଯାଇ ପାରିବ ।

ଅବଶ୍ୟ ବିବିଧ ରଚନା ମଧ୍ୟରେ ଅନ୍ତର୍ଭୁକ୍ତ ଗୀତ କବିତା ଗୁଡ଼ିକର ସମୟ ନିରୂପଣ ସମ୍ଭବ ନୁହେ । କାରଣ ସେଗୁଡ଼ିକ କବିଙ୍କ ସାମୟିକ ରଚନା ଓ ସ୍ୱତଃ ସ୍ଫୁର୍ତ୍ତି କବି ବିଳାସ ମାତ୍ର । ଏହା ବିଭିନ୍ନ ସମୟରେ

ରଚିତ ହୋଇଥିବ ଓ ପରେ ସଂଗୃହୀତ ହୋଇ ଗ୍ରନ୍ଥ ରୂପରେ ପ୍ରକାଶ କରାଯାଇଥିବ ।

ଉପେନ୍ଦ୍ରଙ୍କ ପ୍ରକାଶିତ କାଳ୍ପନିକ କାବ୍ୟ ମଧ୍ୟରେ ଚନ୍ଦ୍ରରେଖା, ଶୋଭାବତୀ, ସୁବର୍ଣ୍ଣରେଖା ଓ ଲାବଣ୍ୟବତୀ ନିଶ୍ଚିତ ଭାବରେ ରସଲେଖାର ପୂର୍ବବର୍ତ୍ତୀ । ତେଣୁ କୁହାଯାଇପାରେ ଏ ସମସ୍ତ ରଚନା କବିଙ୍କ ପ୍ରାଥମିକ ପ୍ରତିଭୋନ୍ମେଷ ସୃଷ୍ଟି, ଅର୍ଥାତ୍ ୧୬୦୦ ଖ୍ରୀ:ଅ ଠାରୁ ୧୬୦୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଛି । ସେହିପରି ରାମଲୀଳାମୃତ ନିତାନ୍ତ ପ୍ରାଥମିକ ରଚନା ହେତୁ ରସଲେଖା ପୂର୍ବବର୍ତ୍ତୀ ଭାବରେ ଗୃହୀତ ହେବା ଉଚିତ । ଠିକ୍ ଏହି ଭାବରେ ପର୍ଯ୍ୟବେକ୍ଷଣ କଲେ ରସିକହାରାବଳୀ, କଳାକଉତୁକ, ଅବନା ରସ ତରଙ୍ଗ ପ୍ରଭୃତି କେତେ ଓ ପାଣ୍ଡିତ୍ୟର ନିଦର୍ଶନ ସୂଚକ ହେତୁ ୧୬୧୦ ପରର ରଚନା ଭାବେ ଗ୍ରହଣ କରାଯିବା ସମୀଚୀନ ହେବ ।

ସମସ୍ତ ଆଲୋଚକ ଏଥିରେ ଏକମତ ଯେ, ଛାନ୍ଦକାବ୍ୟ ବଇଦେହୀଶବିଳାସ ଓ ପୁରୁଷୋତ୍ତମ ମାହାତ୍ମ୍ୟ କବିଙ୍କ ଅନ୍ତିମ ସମୟର ରଚନା । ହୋଇପାରେ କବିଙ୍କ ଅଜସ୍ର ସ୍ରୋତା ଲେଖନୀ ପରେ ଓଡ଼ିଆ ସାହିତ୍ୟକୁ ଅନ୍ୟ କିଛି ଅବଦାନ ଦେଇଥିବ । ତେବେ ଏତିକି କୁହାଯାଇପାରେ ଯେ, ଉପେନ୍ଦ୍ରଙ୍କ ପ୍ରତିଭା କ୍ରମଶଃ ପାଣ୍ଡିତ୍ୟ ଅଭିମୁଖୀ ହୋଇଛି ଏବଂ ଛାନ୍ଦକାବ୍ୟ ବଇଦେହୀଶବିଳାସରେ ତାର ସର୍ବଶ୍ରେଷ୍ଠ ପରିପ୍ରକାଶ ଘଟିଛି ।

ଉପେନ୍ଦ୍ରଙ୍କ କୃତି ସମଗ୍ରକୁ ଦୃଷ୍ଟିପାତ କଲେ ମନେହୁଏ ରସଲେଖା କବି ପ୍ରତିଭା ମଧ୍ୟାହ୍ନର ସୃଷ୍ଟି । ତେଣୁ ସେହି କୃତିରେ ଥିବା କବି ପ୍ରତିଭା ପ୍ରଗାଢ଼ ଆଧାରରେ କବିଙ୍କ ସୃଷ୍ଟିର କ୍ରମ ନିର୍ଣ୍ଣୟ କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ଅଧିକ ଅଧିକ ଗବେଷଣା ଦ୍ୱାରା ପ୍ରତ୍ୟେକ ସୃଷ୍ଟିର କ୍ରମବଦ୍ଧ ବିକାଶ ଶୃଙ୍ଖଳା ରକ୍ଷା କରିବା ପାଇଁ ଯତ୍ନ କଷ୍ଟସାଧ୍ୟ ମନେହେଲେ ମଧ୍ୟ ଅସମ୍ଭବ ନୁହେଁ ।

***

# ପାଦଟୀକା

୧— ରସଲେଖା, ରସିକହାରାବଳୀ, ପ୍ରେମ ସୁଧାନିଧି, ସୁଭଦ୍ରା ପରିଣୟ, ଲାବଣ୍ୟବତୀ, ବୈଦେହୀଶ ବିଳାସ, ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

୨— ରାମତାରକ ମନ୍ତ୍ର ସିଦ୍ଧି ପରେ ଉପେନ୍ଦ୍ରଙ୍କ ଠାରେ ପ୍ରତିଭାର ଅଲୌକିକ ସ୍ଫୁରଣ ଘଟିଥିଲା । ସେ ସୀତା-ରାମଙ୍କ ପ୍ରୀତ୍ୟର୍ଥେ 'ବ' ଆଦ୍ୟ ଶବ୍ଦପଦରେ 'ବୈଦେହୀଶ ବିଳାସ' ମହାକାବ୍ୟ ରଚନା କରି ଓଡ଼ଗାଁ ରଘୁନାଥ ମହାପ୍ରଭୁଙ୍କ ମନ୍ଦିରରେ ବର୍ଣ୍ଣିତ ଆଦ୍ୟ ପାରାୟଣ କରିଥିଲେ । 'ବୈଦେହୀଶ ବିଳାସ' ପଛକୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, କଳା କଉତୁକ, ରସଲେଖା ଆଦି ଷାଠିଏ ଖଣ୍ଡ କାବ୍ୟ ଓ ଅସଂଖ୍ୟ ଗୀତ ସଙ୍ଗୀତ ପ୍ରଣୟନ କରି ସେ ରଘୁନାଥ ମହାପ୍ରଭୁଙ୍କ ପାଦଦେଶରେ ନିବେଦନ କରିଥିଲେ ।

ବିଲ୍ଲଣ ଚନ୍ଦ୍ରନାରାୟଣ-ଭଞ୍ଜପଦ୍ମ-ପୃ-ମୁଖବନ୍ଧ-(ଚ)
କଳିଙ୍ଗ ଭାରତୀ ଗ୍ରନ୍ଥମାଳା ପ୍ରକାଶକ ଭଞ୍ଜଜୟନ୍ତୀ ସମିତି-୧୯୫୩

୩— କୋଟୀବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀ ପ୍ରଭୃତିରେ କବିତ୍ୱ ଓ ପାଣ୍ଡିତ୍ୟର ଯେଉଁ ମହିମାମୟ ପ୍ରକାଶ ସେ ଦୃଷ୍ଟିରୁ ବୈଦେହୀଶ ବିଳାସ ପରେ ପରେ ସେ ଦୁଇଟିକୁ ସ୍ଥାପନ କଲେ ବିଶେଷ ଅସଂଗତ ହେବନାହିଁ । କିନ୍ତୁ ବୈଦେହୀଶ ବିଳାସରେ ପ୍ରୌଢ଼ ମସ୍ତିଷ୍କର ବଳିଷ୍ଠ ଅଭିବ୍ୟକ୍ତି ଦେଖି ଅନେକେ ଏହି କାବ୍ୟକୁ ଲାବଣ୍ୟବତୀରେ ସ୍ଥାପନ କରିବାକୁ ଯୁକ୍ତିଯୁକ୍ତ ମନେ କରନ୍ତି । କିନ୍ତୁ ଏଥିପାଇଁ ବିଶେଷ ଗବେଷଣା ଲୋଡ଼ା । (ବୈ-ବିଳାସ-ଟୀକାକାର-ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା-ଭୂମିକା-ପୃ-(ଙ-୭୩)

୪— ରସିକ ହାରାବଳୀ କାବ୍ୟ ବେଳକୁ କବି ଶାକ୍ତ ରହିଥିଲେ ଓ ରାମ ତାରକ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ, କିନ୍ତୁ ରସଲେଖା ବେଳକୁ ରାମ ତାରକ ମନ୍ତ୍ର ଗ୍ରହଣ କରି ନ ଥିଲେ । ଯେହେତୁ ସେ କାବ୍ୟରେ ହରିହର ସ୍ତୁତି କରିଛନ୍ତି । (ବିନାୟକ ମିଶ୍ର-ଓଡ଼ିଆ ସାହିତ୍ୟର ଇତିହାସ-ପୃ-୧୮୭)

୫— କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଂ ଚ ଗୁଣ କୀର୍ତ୍ତନମ୍ ।
(ବିଶ୍ୱନାଥ କବିରାଜ-ସାହିତ୍ୟ ଦର୍ପଣଃ-ପୃ-୪୬୧)

୬— ଭବ ବନା କେ ଜାଣିବେ ଏଥୁ କଷ୍ଟ ଯେତେ ।
(ପ୍ରେମ ସୁଧାନିଧି-୧୬-୧୬)

ଭବ ଜାଣିବେ ଯେତେ ଶ୍ରମ ଏଥି ଏ ଦେଶ ଦେଖିଲେ ଗ୍ଲାନ ଯେ
(ଲାବଣ୍ୟବତୀ-୪-୪୦)

କଷ୍ଟକୁ ଜାଣିବେ ସୁକବି ଯେଉଁମାନେ ପ୍ରତୀକ ।
(କଳା କଉତୁକ-୧-୧୦)

ସ ଭବ ବଚନେ କଷ୍ଟ ବିଭେଳ ଛନ୍ଦେ ।
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୨୧-୧୯)

୭— ବାଗର୍ଥାବିବ ସଂପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ ।
ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।
(ରଘୁବଂଶ ମହାକାବ୍ୟମ୍ ୧-୧)

୮— ଧନ୍ୟାସି ବୈଦର୍ଭି ଗୁଣୈରୁଦାରୈର୍ଯୟା ସମାକୃଷ୍ୟତ ନୈଷଧୋଽପି
ଇତସ୍ତୁତି କା ଖଳୁ ଚନ୍ଦ୍ରିକାୟା ଯଦବ୍ଧି ମପ୍ୟୁତ୍ତରଳୀ କରୋତି ।
(ନୈଷଧୀୟ ଚରିତମ୍ ୩-୧୧୬ ଶ୍ଳୋକ)

୯ – ଶତଶାମାର୍ଗେ ଜକ୍ରୀଳଂକାରଯୋର୍ମୁଖ୍ୟତା ଚେଷ୍ଟିତ × × × ×
ଏତକାଃକଂଭାବେ ବିଶେଷେଣ ଗୁମ୍ଫିତା ଚେଷ୍ଟା । ବଚନ ଯୈଳ୍ପାଂ
ଗଣିକା ନାସ୍ତିକାବଲ୍ଲ କୃତିମ ସଜ୍ଜିତ ଶୃଗାଷଣାଂ ଚଥାଙ୍ଗଂକାସଣାଂ
ପ୍ରଦର୍ଶନଂ ପ୍ରାପ୍ତଂ ଭବନ୍ତି । (ସାହିତ୍ୟ ଦର୍ପଣଃ-ଲକ୍ଷ୍ମୀ ଟୀକା-ପ୍ରସ୍ତାବନ
(ପୃ-୫୩)

୧୦ – ଆଦୌ ନମସ୍କ୍ରିୟା ଶୀର୍ବା ବସ୍ତୁ ନିର୍ଦ୍ଦେଶ ଏବ ବା
(ବିଶ୍ୱନାଥ କବିରାଜ-ସାହିତ୍ୟଦର୍ପଣଃ-ପୃ-୪୬୧

୧୧— ସୁଭଦ୍ରା ପରିଣୟରେ ନୀଳାଚଳନାଥ ଶ୍ରୀ ଜଗନ୍ନାଥଙ୍କୁ ବନ୍ଦନା କରି ଗ୍ରନ୍ଥ ଆରମ୍ଭ କରାଯାଇଛି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ଦାରୁବ୍ରହ୍ମଙ୍କ ସ୍ତୁତି ସଙ୍ଗେ ସଙ୍ଗେ ସାଧୁସ୍ତୁତି ଓ ଖଳନିନ୍ଦାର ଅବତାରଣା କରାଯାଇଛି । ସେହିପରି ଲାବଣ୍ୟବତୀରେ ବସ୍ତୁ ନିର୍ଦ୍ଦେଶ ଓ ଆଶୀର୍ବାଦାତ୍ମକ ମଙ୍ଗଳାଚରଣ ଦେଖିବାକୁ ମିଳେ ।

(ଦ୍ର : ବେଣୀମାଧବ ପାଢ଼ୀ-ଭଂଜଙ୍କ କାବ୍ୟ ରଚନା ପୃ-୩୦)

୧୨ - ରସଲେଖା (୧୦-୧୯) ରସିକହାରାବଳୀ (୧-୫) (୧୫-୨୦)

ପ୍ରେମସୁଧାନିଧି (୧୬ ଛାନ୍ଦର ୧୬ ପଦଠାରୁ ୨୦ ପଦ)

ସୁଭଦ୍ରାପରିଣୟ—(୧-୧୬,୧୭,୧୮) (୨-୨୭) (୫-୨୨, ୬୧)
(୬-୩୭) (୧୧-୧୨,୧୩,୬୨,୭୧) (୧୪-୮,୯)

ଲାବଣ୍ୟବତୀ—(୧-୮) (୬-୫୪,୫୫) (୭-୪,୭) (୫-୯) (୧୦-୩୪
(୨୫-୨୧) (୨୭-୨୫)

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—(୮-୧୭,୧୯) (୧୨-୧,୨) (୧୬-୨୯)
(୨୩-୧୮,୩୦) (୨୫-୩୦) (୨୬-୬୭)
(୨୮-୪) (୨୮-୫) (୨୩୧-୩୨) (୩୩-୧୬)
(୩୩-୪୪) (୩୫-୪୦)

ବୈଦେହୀଶବିଳାସ—(୧-୩) (୪-୬,୩୧, ୬୮,୭୦,୭୪) (୭-୬୨
(୧୧-୧୧,୧୬) (୧୨-୨୦) (୧୩-୫୭) (୧୫-୩,୧୦
(୧୮-୩୦) (୧୯-୧,୪,୭,୧୦,୧୩,୧୫,୧୯,୨୦,
୨୨,୩୧,୩୨,୩୪,୩୫,୩୬) (୨୧-୬) (୨୨-୬୭)
(୨୩-୫,୫୭) ।

(୨୭-୫୨) (୨୮-୩୬) (୨୯-୧) (୩୦-୨୨)
(୩୪-୧୮) (୩୭-୧୧) (୪୧-୧୬) (୪୨-୭)
(୪୫-୨୦) (୪୭-୧) (୪୮-୭୨) (୪୯-୧୨,୧୮
୧୯,୨୦,୩୮,୪୦, ୮୬) (୫୧-୭) (୫୨-୧୭)

୧୩—ସୁଭଦ୍ରା ପରିଣୟ (ଛାନ୍ଦ-୧୭) ଲାବଣ୍ୟବତୀ (ଛାନ୍ଦ ୨୩)

୧୪—ଅପରଂତୁ ଗୁଣୀଭୂତ ବ୍ୟଙ୍ଗ୍ୟଂ ବାଚ୍ୟାଦନୁତ୍ତମେ ବ୍ୟଙ୍ଗ୍ୟେ...
(ବିଶ୍ୱନାଥ ସାହିତ୍ୟଦର୍ପଣ-ପୃ-୨୮୦)

ବୈଦେହୀଶ ବିଳାସ—(୧-୩) (୪-୭) (୪-୭୮) (୧୧-୧୭)
(୧୨-୨୦) (୧୯-୩୪) (୨୨-୬୭) (୨୩-୫୭)
(୪୨-୨) (୪୫-୨୦) (୪୯-୩୮)

୧୫—ବାମନ-କାବ୍ୟାଳଂକାର ସୂତ୍ରାଣି

୧୬—ଶବ୍ଦାର୍ଥୟୋରସ୍ଥିରା ଯେ ଧର୍ମାଃ ଶୋଭାତିଶାୟିନଃ
ରସାଦୀନୁପକୁର୍ବନ୍ତୋଽଲଂକାରାସ୍ତେଽଙ୍ଗଦାଦିବତ୍ (ବିଶ୍ୱନାଥ-ସାହିତ୍ୟ ଦର୍ପଣ)

୧୭—

| କାବ୍ୟର ନାମ | ଛାନ୍ଦ ସଂଖ୍ୟା | ପଦ ସଂଖ୍ୟା | ଶବ୍ଦାଳଙ୍କାର ଯୁକ୍ତପଦସଂଖ୍ୟା | ଅର୍ଥାଳଙ୍କାରଯୁକ୍ତ ପଦସଂଖ୍ୟା |
|---|---|---|---|---|
| ରସଲେଖା | ୨୨ | ୭୨୭ | ୯୧ | ୨୨୨ |
| ରସିକହାରାବଳୀ | ୧୫ | ୩୮୭ | ୧୪୨ | ୧୭୩ |
| ପ୍ରେମସୁଧାନିଧି | ୧୭ | ୩୯୫ | ୨୩୪ | ୨୨୮ |
| ସୁଭଦ୍ରାପରିଣୟ | ୧୭ | ୭୩୭ | ୧୭୯ | ୩୬୨ |
| ଲାବଣ୍ୟବତୀ | ୪୮ | ୨୩୬୧ | ୨୬୭ | ୯୭୫ |
| ବୈଦେହୀଶବିଳାସ | ୫୨ | ୨୭୨୪ | ୧୧୩୦ | ୧୨୦୫ |
| କୋଟିବ୍ରହ୍ମାଣ୍ଡସୁନ୍ଦରୀ | ୩୫ | ୧୪୬୦ | ୬୪୨ | ୭୧୩ |

୧୮—ଉପମୈକା ଶୈଳୂଷୀ ସଂପ୍ରାପ୍ତା ଚିତ୍ର ଭୂମିକା ଭେଦାନ୍
ରଂଜୟନ୍ତୀ କାବ୍ୟରଙ୍ଗେ ନୃତ୍ୟନ୍ତୀ ତଦ୍‌ବିଦାଂ ଚେତଃ ।
(ଅପ୍ପୟ ଦୀକ୍ଷିତ—ଚିତ୍ର ମୀମାଂସା)

୧୯ ଅବଶ୍ୟ ବତିଶ ଲକ୍ଷଣ ଶବ୍ଦର ଉଲ୍ଲେଖ ପ୍ରେମ ସୁଧାନିଧିରେ ରହିଛି, କିନ୍ତୁ ସେଠାରେ କେବଳ ଶ୍ଳେଷ ଅଳଂକାର ପ୍ରୟୋଗ ପାଇଁ ଏ ଶବ୍ଦ ଗୃହୀତ ହୋଇଛି । ତାହାକୁ ବତିଶ ଲକ୍ଷଣ ରୂପେ ଗ୍ରହଣ କରାଯାଇ ନାହିଁ ।

୨୦ – ବତିଶ ଲକ୍ଷଣ— ଶରୀରର ଶୁଭୋଦ୍‌ବୋଧ ଯାହା ମହାପୁରୁଷ ବା ମହସ୍ତ
ନାରୀର ଲକ୍ଷଣ ରୂପେ ଗୃହୀତ ।

୭ଗୋଟି ଅଙ୍ଗର ରକ୍ତତା ବା ରକ୍ତିମା— ନୟନ, ନଖ, ଅନ୍ତ, କର,
ଚରଣ ତଳ, ଅଧର ଓ ତାଳୁ ।

୬ ,, ,, ତୁଙ୍ଗତା— ପାଦ, ଲଲାଟ, ସ୍କନ୍ଧ, ନୟନ, କୁକ୍ଷି, ବକ୍ଷ

୩ ,, ,, ବିସ୍ତାର— ନୟନ, ଲଲାଟ ଓ ଉର

୩ ,, ,, ଖର୍ବତା— ଗ୍ରୀବା, ଘୁଣ୍ଟିକା, ଜୋଷ

୩ ,, ,, ଗମ୍ଭୀରତା— ନାଭି, ସ୍ୱର ଓ ସତ୍ତ୍ୱ

୫ ,, ,, ଦୀର୍ଘତା— କର, ନେତ୍ରାନ୍ତର, ହନୁ, ନାସିକା,
ହୃଦୟସ୍ତନ ମଧ୍ୟ

୫ ,, ,, କୋମଳତା— ଅଂଗୁଳିପର୍ବ, କେଶ, ଲୋମ,
୩୨ ତ୍ୱକ୍ ନଖ

ରୂପ ଗୋସ୍ୱାମୀ କବିକୃତ ଭଗତି ରସାମୃତ ଉକ୍ତି ।
ବୃନ୍ଦାବନ ଦାସୀ— ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ ସପ୍ତମ ଅଧ୍ୟାୟ

| | | | | |
|---|---|---|---|---|
| ୨୧ — ରସକଲ୍ଲୋଳ | ପଦସଂଖ୍ୟା | ୨୨୬ | ପ୍ରଯୁକ୍ତ ଉପମାନସଂଖ୍ୟା | ୩୨୩ |
| ରସିକହାରାବଳୀ | | ୩୮୬ | ,, | ୨୬୨ |
| ପ୍ରେମ ସୁଧା ନିଧି | ,, | ୩୯୫ | ,, | ୪୦୧ |
| ସୁଭଦ୍ରାପରିଣୟ | ,, | ୬୩୬ | ,, | ୬୯୨ |
| ଲାବଣ୍ୟବତୀ | ,, | ୨୩୬୧ | ,, | ୧୨୮୩ |
| ବୈଦେହୀଶ ବିଳାସ | ,, | ୨୬୨୪ | ,, | ୨୦୯୩ |
| କୋଟିବ୍ରହ୍ମାଣ୍ଡ ସୁନ୍ଦରୀ | ,, | ୧୪୬୦ | ,, | ୧୦୯୫ |

❋❋❋

# କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଜାତକ ବିଚାର

ଅଧ୍ୟାପକ ଶ୍ରୀ ନିରଞ୍ଜନ ପଟ୍ଟନାୟକ

ଓଡ଼ିଶାର ଜନଜୀବନ ସୂକ୍ଷ୍ମତମ ବୃତ୍ତି ଓ ଚୈତନ୍ୟ ପ୍ରତି ଗଭୀର ଭାବେ ପରିଚିତ ଥିବା କବିମାନଙ୍କ ମଧ୍ୟରେ କବିବର ଉପେନ୍ଦ୍ର ଭଞ୍ଜ ଅନ୍ୟତମ। କାରଣ ତାଙ୍କ କାବ୍ୟକଳାର ଅଳଙ୍କାର ବର୍ଣ୍ଣନା ବୈଭବ ପାଇଁ ସେ ଯେତେଦୂର ପରିଚିତ ହୁଅନ୍ତୁ ନା କାହିଁକି, ଓଡ଼ିଶାର ସାମାଜିକ ତଥା ସାଂସ୍କୃତିକ ଜୀବନର ସୂକ୍ଷ୍ମତମ ଅଭିବ୍ୟକ୍ତି ପାଇଁ ସେ ତା' ଠାରୁ କୌଣସି ଗୁଣରେ କମ୍ ପରିଚିତ ନୁହନ୍ତି ।

ଓଡ଼ିଆ ଜନଜୀବନର ବିଧିବିଧାନ, ଲୋକମତ, ଲୋକବାଣୀ ପ୍ରଭୃତି ସାମାଜିକ ଓ ସାଂସ୍କୃତିକ ଚଳଣି ତାଙ୍କ କାବ୍ୟରେ କାବ୍ୟିକ ଉପଯୋଗିତା ଦୃଷ୍ଟିରୁ ଯଥାଯଥଭାବରେ ଆସନ ଲାଭ କରିଥିବାର ଲକ୍ଷ୍ୟ କରାଯାଏ। କର୍ମଫଳ ଭିତ୍ତିକ ଜନ୍ମାନ୍ତରବାଦରେ ବିଶ୍ୱାସ କରୁଥିବା ଓଡ଼ିଆ କେଉଁ ଆବହମାନ କାଳରୁ ଭାଗ୍ୟ ଓ ଭଗବାନ ଉପରେ ଆସ୍ଥାସ୍ଥାପନ କରିଆସିଛି ।

କେବଳ ଉପେନ୍ଦ୍ର ଭଞ୍ଜ ନୁହନ୍ତି, ବରଂ ସର୍ବଭାରତୀୟ ସ୍ତରର ବହୁ ପୂର୍ବ ସୂରୀ ଭାରତୀୟ ଜନଜୀବନର ଏହି ସୂକ୍ଷ୍ମତମ ବୃତ୍ତି ପ୍ରତି ସମଧିକ ଭାବେ ପରିଚିତ ଥିବାର ପ୍ରମାଣର ଅଭାବ ନାହିଁ । ସଂସ୍କୃତ ସାହିତ୍ୟରେ ବ୍ୟାସ, ବାଲ୍ମୀକିଙ୍କ ଠାରୁ ଆରମ୍ଭ କରି କାଳିଦାସ, ଭବଭୂତି ମାଘ, ଶ୍ରୀହର୍ଷ ପ୍ରଭୃତି ବହୁ କବି ସ୍ୱୀୟ କୃତି ସମୂହରେ ଏହି ଆର୍ଯ୍ୟଜାତୀ ଚାନ୍ଦ୍ରା ପ୍ରସୂତି ଶାସ୍ତ୍ର ଜ୍ୟୋତିଷିକ ତଥ୍ୟାତଥ୍ୟର ବହୁବିଧ ପ୍ରୟୋଗ ଓ ପରୀକ୍ଷା କରିଛନ୍ତି । ଜନ୍ମ, ନାମକରଣ, ଚୂଡ଼ାକରଣ, କର୍ଣ୍ଣବେଧ, ବିବାହ, ବ୍ରତ, ଯାତ୍ରା, ଯୁଦ୍ଧଯାତ୍ରା, ଦୀକ୍ଷା ପ୍ରଭୃତି ଶୁଭାଶୁଭ କାର୍ଯ୍ୟ ପ୍ରସଙ୍ଗରେ ଏ ଶାସ୍ତ୍ରର ପର୍ଯ୍ୟାପ୍ତ ଆଲୋଚନା କରିଯାଇଛନ୍ତି ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଶାରଳା, ବଳରାମ, ଜଗନ୍ନାଥ ପ୍ରମୁଖ ବହୁ ପୂର୍ବ ସୂରୀ ପ୍ରସଙ୍ଗକ୍ରମେ ଗ୍ରହ, ନକ୍ଷତ୍ର, ତିଥି, ବାର, ଯୋଗ,

କରଣୋଦର ଶୁଦ୍ଧାଶୁଦ୍ଧ ଦଶ ତତ୍ତ୍ୱର ଆଲୋଚନା କରିଛନ୍ତି । ଶାରଳା ମହାଭାରତର ପ୍ରାୟ ପ୍ରତ୍ୟେକ ଅଧ୍ୟାୟ ଓ ଉପାଖ୍ୟାନରେ ଜ୍ୟୋତିଷିକ ତଥ୍ୟ ବ୍ୟାପକ ଭାବେ ଉପସ୍ଥାପିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଏ ମର୍ମରେ ଆଦି ପର୍ବରେ ଶାନ୍ତନୁଙ୍କ ବିବାହ, ଭୀଷ୍ମଙ୍କ ଜନ୍ମ ଏବଂ ଦ୍ରୌପଦୀଙ୍କ ପତିବ୍ରତ ଯାତ୍ରା ଏ ପ୍ରସଙ୍ଗରେ ବର୍ଣ୍ଣିତ ମହାଜାତକ ତତ୍ତ୍ୱ ଅଧିକ ପ୍ରଣିଧାନର ବିଷୟ । ସେହିପରି ସନ୍ଥକବି ଜଗନ୍ନାଥ ଦାସ ଶ୍ରୀକୃଷ୍ଣଙ୍କ ଜନ୍ମ ସମୟର ମହାଜାତକ ତଥ୍ୟ ଉପସ୍ଥାପିତ କରିବାକୁ ଯାଇ ସ୍ପଷ୍ଟ ଭାବେ ଉଲ୍ଲେଖ କରନ୍ତି—

"ଭାଦ୍ରବ ମାସ କୃଷ୍ଣ ପକ୍ଷ । ସକଳ ଗ୍ରହେ ଛନ୍ତି ଉଚ୍ଚ ॥ ୮ ॥
ଅଷ୍ଟମୀ ନିଶି ଅର୍ଦ୍ଧ ଭାଗେ । ରୋହିଣୀ ବୃଷଭ ସଂଯୋଗେ । ୯ ।
ବୃଷ ରାଶିରେ ନିଶାକର । ନକ୍ଷତ୍ର ଗ୍ରହେ ବଳୀୟାର । ୧୦ । ଇତ୍ୟାଦି
(ଶ୍ରୀମଦ୍ ଭାଗବତ—ଦଶମ ସ୍କନ୍ଧ)

ଉଦ୍ଧୃତ ଦୃଷ୍ଟାନ୍ତରୁ ସନ୍ଦର୍ଭରେ ପ୍ରମାଣିତ ହୁଏ ଯେ, ବହୁ ପ୍ରତିଭାଶାଳୀ ତଥା ଜନପ୍ରିୟ କବି ଏ ପରଂପରାର ବିଶେଷ ପୋଷକ ଥିଲେ । ତେଣୁ ବହୁ ଶାସ୍ତ୍ରଦର୍ଶୀ ରସିକ କବି ଉପେନ୍ଦ୍ର ଭଞ୍ଜ ଏ ପରଂପରାନୁରୋଧରେ ଓଡ଼ିଶୀ ଜନ ମାନସର ସୂକ୍ଷ୍ମ ଚେତନାକୁ ସ୍ପର୍ଶ କରୁଥିବା ଏହି ଜ୍ୟୋତିଷିକ ତଥ୍ୟର ଏକ ବ୍ୟାପକ ଅଥଚ ତଥ୍ୟପୂର୍ଣ୍ଣ ପ୍ରୟୋଗ କରି ସ୍ୱୀୟ କାବ୍ୟ କବିତାକୁ ଏକ ନବତନ୍ତ୍ରର ସନ୍ଧାନ ଦେବାପାଇଁ ପ୍ରୟାସୀ ହୋଇଛନ୍ତି । କବିସ୍ୱୀୟ 'ବୈଦେହୀଶ ବିଳାସ' 'ଲାବଣ୍ୟବତୀ' ଓ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଜ୍ୟୋତିଷିକ ତଥ୍ୟର ବ୍ୟାପକ ଉପଯୋଗ ଏବଂ 'ପ୍ରେମ ସୁଧାନିଧି', 'ସୁଭଦ୍ରା ପରିଣୟ' । 'ଛାନ୍ଦ ଭୂଷଣ' ଓ 'ରସଲେଖା' କାବ୍ୟରେ ଯତ୍‌ସାମାନ୍ୟ ଭାବେ ଏ ତଥ୍ୟର ଉପଯୋଗ କରିଥିବାର ଲକ୍ଷ୍ୟ କରାଯାଏ । କାବ୍ୟ ବର୍ଣ୍ଣିତ ଅଳଂକାରକୁ ଅଧିକ ବୌଦ୍ଧିକ ତଥା ତଥ୍ୟପୂର୍ଣ୍ଣ କରିବା ପାଇଁ କବି ବହୁ କ୍ଷେତ୍ରରେ ଏ ଶାସ୍ତ୍ରର ଉପଯୋଗ କରିଛନ୍ତି । ଏହା ବ୍ୟତୀତ କାବ୍ୟ ବର୍ଣ୍ଣିତ ବିଷୟ ବିନ୍ୟାସକୁ ଅଧିକ ଲୌକିକ ତଥା ପରଂପରାନୁମୋଦିତ କରିବା ପାଇଁ ବହୁ କ୍ଷେତ୍ରରେ ଜ୍ୟୋତିଷିକ ତଥ୍ୟର ପ୍ରତ୍ୟକ୍ଷ ଆଲୋଚନା ମଧ୍ୟ କରିଛନ୍ତି । କିନ୍ତୁ ଏହି ପ୍ରତ୍ୟକ୍ଷ ଆଲୋଚନାରେ

ସତ୍ୟାନୁସନ୍ଧାନ ବେଦେଉ କ୍ଷେତ୍ରରେ ଗବେଷଣା ସାପେକ୍ଷ ହେଲେ ମଧ୍ୟ ପ୍ରାୟ ପ୍ରତ୍ୟେକ ଦୃଷ୍ଟାନ୍ତରେ ଜାତକର ଉପଯୋଗିତା ରହିଛି । ଏ ମର୍ମରେ କବିଙ୍କ ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଅନୁସୃତ ଜାତକ ବିଚାରକୁ ଅନୁଶୀଳନ କଲେ ଏହାର ସତ୍ୟତା ସହଜରେ ଉପଲବ୍ଧ ହେବ । ଶୁଭାଶୁଭ କାର୍ଯ୍ୟାରମ୍ଭରେ ଈପ୍ସିତ ଧର୍ମର ଭବିଷ୍ୟ ବିଧାନ ଜାଣିବାର ଆବଶ୍ୟକ ଉତ୍କଣ୍ଠାରୁ ଜ୍ୟୋତିଷିକ ପର୍ଯ୍ୟାନୁଶୀଳନର ପରଂପରା ସୃଷ୍ଟି ହୋଇଛି । କର୍ମଫଳ ଭିତ୍ତିକ ଭାଗ୍ୟବାଦ ଉପରେ ବିଶ୍ୱାସ କରି ଆସିଥିବା ଆମ ସମାଜ ଯୁଗେ ଯୁଗ ଏ ପରଂପରାକୁ ଅନୁସରଣ କରି ଆସିଛି । ତେଣୁ ଜନ୍ମ, ବିବାହ, ବ୍ରତ, ଯଜ୍ଞାଦି କାର୍ଯ୍ୟରେ ଶୁଭାଶୁଭ ବିବେଚନା ଆମ ସାମାଜିକ ଚଳଣିରେ ଏକ ଧାରାବାହିକ ବ୍ୟାପାର । ଏ ସମସ୍ତ ବିଧି ବିଧାନ ମଧ୍ୟରେ ବିବାହ ବା ଜାୟା ଗ୍ରହଣ ପାଇଁ ଶୁଭାଶୁଭ ବିବେଚନା ଆମ ସମାଜରେ ସର୍ବାଧିକ । କାରଣ ଆମ ପରଂପରାରେ ଜାୟା ବା ପତ୍ନୀକୁ ଚତୁର୍ବର୍ଗ ଫଳପ୍ରାପ୍ତିର ହେତୁ ରୂପେ ଗ୍ରହଣ କରାଯାଇଛି । ( ) ତେଣୁ ବିବାହ ଚୂଡ଼ାନ୍ତ ହେବା ପୂର୍ବରୁ ଜାତକ ଗଣନା ଦ୍ୱାରା ବର କନ୍ୟାଙ୍କ ମେଳକ ପରୀକ୍ଷା ଆମ ସମାଜରେ ଏକ ସାଧାରଣ କର୍ତ୍ତବ୍ୟ ଭାବେ ପରିଗଣିତ । ଅବଶ୍ୟ ସୁସ୍ଥ ଦାଂପତ୍ୟ ଜୀବନ ପାଇଁ ଏତାଦୃଶ ସୂକ୍ଷ୍ମ ବିଶ୍ଳେଷଣର ଯଥେଷ୍ଟ ଗୁରୁତ୍ୱ ରହିଛି । କିନ୍ତୁ ସାଧାରଣତଃ ଆମ ସମାଜରେ ଯେଉଁ ଭାବରେ ମେଳକ ବିଚାର କରାଯାଉଛି, ତାହା ଶାସ୍ତ୍ରୀୟ ଦୃଷ୍ଟିରୁ ପୂର୍ଣ୍ଣାଙ୍ଗ ନୁହେଁ । ଏଥିରେ ମୁଖ୍ୟତଃ ତାରା ଚନ୍ଦ୍ର ମେଳକକୁ ବିଚାର କରାଯାଇ, ଯୋଗ, ଲଗ୍ନ ଓ ଗ୍ରହ ବିଶେଷଙ୍କ ମେଳକ ସମ୍ପୂର୍ଣ୍ଣ ଉପେକ୍ଷା କରାଯାଉଥିବାର ଲକ୍ଷ୍ୟ କରାଯାଏ । ଜାତକର ଜନ୍ମବାର ଓ ଚନ୍ଦ୍ରକୁ ଶାସ୍ତ୍ରରେ ଯଥାକ୍ରମେ ସ୍ୱାସ୍ଥ୍ୟ ଶାରୀରିକ ଓ ମାନସିକ କାରକ ଭାବେ ବିଧାନ କରାଯାଇଛି । ମାନସିକ ସ୍ତରରେ ଦମ୍ପତିଙ୍କ ଉତ୍ତମ ବୁଝାମଣା ଦାଂପତ୍ୟ ଜୀବନର କେନ୍ଦ୍ର ବିନ୍ଦୁ ସ୍ୱରୂପ । ତେବେ ନାଡ଼ିବେଧ, ଯୋନି ବିଧାନ ତଥା ଦଂପତିଙ୍କ ଚରିତ୍ରଗତ ସ୍ୱଭାବକୁ କୌଣସିମତେ ପ୍ରତିହତ କରାଯାଇ ନ ପାରେ । ସେଥିପାଇଁ ବରକନ୍ୟାଙ୍କ ରାଶି ନକ୍ଷତ୍ର ମେଳକରେ ରାଜଯୋଟକାଦି ଶୁଭ ମିଳନ ହେଉଥିଲେ ମଧ୍ୟ ବାହୁଦାର ଦଣ୍ଡଦୋଷ ଅର୍ଥାତ୍ ଦାରିଦ୍ର୍ୟ, କୁଳଟା,

ମୃତ୍ୟୁ, ବୈଧବ୍ୟ ଓ ଅନଢ଼କ୍ଷତା ଏହି ପାଞ୍ଚଟି ଦୋଷ ମଧ୍ୟରୁ ଯେ କୌଣସି ଗୋଟିଏ ଦୋଷ ଥିଲେ ମଧ୍ୟ ବିବାହ କରଣୀୟ ନୁହେଁ ବୋଲି ଶାସ୍ତ୍ରୀୟ ପ୍ରମାଣ ରହିଛି । ୨ । ପୁଣି ସ୍ତ୍ରୀ ଜାତକରେ 'ସୌଭାଗ୍ୟଲକ୍ଷଣ' ଯୋଗ ଥିଲେ, ତାହାରି ଯୋଗୁଁ ମେଳକ ଦୋଷ ଥିଲେ ମଧ୍ୟ ବିବାହରେ ଶୁଭ ହେବ ବୋଲି ବିଂଶ ଶତାବ୍ଦୀର ଜଣେ ଅନୁଭୂତ ସମ୍ପନ୍ନ ଜ୍ୟୋତିର୍ବିତ ପଣ୍ଡିତ ଶ୍ରୀ ବାଳକୋଳ ଜ୍ୟୋତିଷ ରତ୍ନାକର ମତବ୍ୟକ୍ତ କରନ୍ତି । ୩ । ଏବଂ ଏହି ଶତାବ୍ଦୀର ଆଉ ଜଣେ ଓଡ଼ିଶୀ ଜ୍ୟୋତିଃ ଗବେଷକ ସ୍ୱର୍ଗତ ମହାମହୋପାଧ୍ୟାୟ ପୂଜାରୀ ଦାସ ସ୍ୱୀୟ 'ଜ୍ୟୋତିଷ ସୁଧାକର'ର ବିବାହ ମେଳକ ପ୍ରସଙ୍ଗରେ ନାଡ଼ୀ ରାଶି ଗଣ ଲଗ୍ନ ଓ ଗ୍ରହ ବିଶେଷଙ୍କ ଯୋଗାଯୋଗ ତଥା ମେଳକର ଆବଶ୍ୟକତା ଉପରେ ମଧ୍ୟ ଗୁରୁତ୍ୱ ଦେଇଛନ୍ତି ।୪।

ପୂର୍ବୋକ୍ତ ବିଚାରରୁ ଜଣାଯାଏ ଯେ, ବିବାହ ମେଳକ ଦୃଷ୍ଟିର ଦମ୍ପତିର ନାଡ଼ୀ ରାଶି ଗଣ ଯୋନି ପ୍ରଭୃତି ବିଷୟର ଆବଶ୍ୟକତା ଥିଲେ ମଧ୍ୟ ଗ୍ରହ ଅଭିଜ୍ଞ ବ୍ୟକ୍ତି ଏହାର ଉପାଦେୟତା ପ୍ରତି କେବଳ ଉଦାସୀନ ନୁହନ୍ତି ଅଜ୍ଞ ମଧ୍ୟ ।

ବନ୍ଧୁ ସ୍ୱରୂପ ମଧ୍ୟ ବହୁ ଶାସ୍ତ୍ରଦର୍ଶୀ ପଣ୍ଡିତ ମତ ଉପେନ୍ଦ୍ରଭଞ୍ଜ ଏ ମର୍ମରେ ଯେଉଁ ନୀତିର ସୂଚନା ଦେଇଛନ୍ତି, ତାହା କେବଳ ଯେ ସୁନ୍ଦର ଏ କଥା ନୁହେଁ, ବରଂ ଉଭୟ କାବ୍ୟ ଓ ଶାସ୍ତ୍ରୀୟ ଯୁକ୍ତି ଦୃଷ୍ଟିରୁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କବିଙ୍କର ଏକାପ୍ରାଣ ନାୟକ ବନ୍ଧୁର ତାଙ୍କର ଦାମ୍ପତ୍ୟ ଜୀବନର ଏକ ନମୁନା ପ୍ରତିପାଦନ କରିବାକୁ ଅତ୍ୟୁକ୍ତି ହେବ ନାହିଁ । ଦାମ୍ପତ୍ୟ ପ୍ରେମର ମୂର୍ତ୍ତିମନ୍ତ ବିକାଶ ଓ ପ୍ରତିଷ୍ଠା ପାଇଁ ଯେଉଁଭଳି ମେଳକ ଏବଂ ଗ୍ରହ ସଂଯୋଜନା ଆବଶ୍ୟକ ତାହା ସେ ଭଳି ଦୁଇଟି ଜାତକ ମଧ୍ୟରେ ଲୋଡ଼ା କରିଛନ୍ତି । କାରଣ କବିଙ୍କ ଦୃଷ୍ଟିରେ ପ୍ରିୟର ମନ ଜାଣିବାକୁ ପ୍ରିୟା ହିଁ ଏ ଜଗତରେ ଏକ ଏବଂ ଅଦ୍ୱିତୀୟ ବ୍ୟକ୍ତି ।୫। ପୁଣି ପ୍ରିୟା ଓ ପତି ବାହ୍ୟତଃ ଦୁଇଜଣ ବ୍ୟକ୍ତି ହେଲେ ମଧ୍ୟ ଆତ୍ମିକ ସ୍ତରରେ ସେମାନେ ଯେ ଏକ ଏବଂ ଅଭିନ୍ନ ବ୍ୟକ୍ତି – ଏ କଥା କବି ଦୃଢ଼ କଣ୍ଠରେ ଘୋଷଣା କରନ୍ତି । ୬ ।

ଷଷ୍ଠ ପତ୍ନୀ ମଧ୍ୟରେ ଏ ଭଳି ଏକାତ୍ମ ସଂପର୍କ ପାଇଁ କେବଳ ତାରା ଚନ୍ଦ୍ରର ମେଳକ ଯଥେଷ୍ଟ ନୁହେଁ । ତେଣୁ ସତର୍କ ସଂଧାନୀ ଭାବ ତାରା ଚନ୍ଦ୍ର ସହ ସାମଗ୍ରିକ ଭାବେ ଜାତକ ଦୁଇଟିର ଲଗ୍ନ, ଗ୍ରହ ବିଶେଷଙ୍କ ଭାବଗତ ଅବସ୍ଥାନ ତଥା ଯୋଗାଦିର ପର୍ଯ୍ୟବେକ୍ଷଣ ପାଇଁ ଦୁଇଟି ସାଂକେତିକ ନକ୍ସା ଉପସ୍ଥାପିତ କରିଛନ୍ତି । ୭ (କ, ଖ ଓ ଗ) ।

ଏଥିରେ ତାରା ଚନ୍ଦ୍ର ଯୋଗେ ପ୍ରଥମ ଶ୍ରେଣୀର 'ରାଜଯୋଟକ' ମେଳକ ଘଟିଥିବାର ଲକ୍ଷ୍ୟ କରାଯାଏ । ଏହା ସହିତ ଲଗ୍ନ, ଚନ୍ଦ୍ର, ତାରକ ଗ୍ରହ ତଥା ଅନ୍ୟାନ୍ୟ ଗ୍ରହ ବିଶେଷ ଜାତକ ଦୁଇଟିରେ ପରସ୍ପରଠାରୁ କେନ୍ଦ୍ର, କୋଣ ଏବଂ ଏପରିକି ଏକ ରାଶି ଅବସ୍ଥାନଗତ ଯୌଗିକ ସଂବଂଧରେ ସଂବଂଧାନ୍ୱିତ । ବର ଜାତକର ମଙ୍ଗଳ ଏବଂ କନ୍ୟା ଜାତକର ଶୁକ୍ର ପରସ୍ପରଠାରୁ କେନ୍ଦ୍ର ତଥା ଅଭିନ୍ନ ରାଶିରେ ଅବସ୍ଥାନ କରନ୍ତି । ଏଥିରୁ ଉଭୟଙ୍କ ମଧ୍ୟରେ ନିବିଡ଼ ଆକର୍ଷଣ ଥିବାର ପ୍ରମାଣିତ ହେଉଛି ।

ଏହାଛଡ଼ା ମିଥୁନ ରାଶି ମାନବର ଲଗ୍ନ ଭାବେ କଳ୍ପିତ । ଜଣେ ସାଧାରଣୀ ସ୍ତ୍ରୀକୁ ଜଣେ ଗଦାଧାରୀ ପୁରୁଷ ଆଲିଙ୍ଗନ କରିବା ହେଉଛି ମିଥୁନ ରାଶିର ସ୍ୱରୂପ । ତେଣୁ ମୈଥୁନ ଇଚ୍ଛା ଓ ରମ୍ୟରଞ୍ଜନ ହେଉଛି ମିଥୁନ ଲଗ୍ନ ଜାତ ବ୍ୟକ୍ତିଙ୍କ ହୃଦଗତ ପ୍ରବୃତ୍ତି । ଏହି ପରିପ୍ରେକ୍ଷୀରେ ନାୟକ ଜାତକରେ ଉଚ୍ଚ ରାଶିଗତ ଶୁକ୍ର ମଙ୍ଗଳଙ୍କ ସହାବସ୍ଥାନ ସମ୍ପର୍କ ଥାଇଥିବା ଯୋଗୁଁ ନାୟକ ଜଣେ ବିଶେଷଭାବେ କାମୀ, ସମ୍ଭୋଗୀ ତଥା ରମଣୀ ରଞ୍ଜନ ଏ କଥା ବିନା ଦ୍ୱିଧାରେ ପ୍ରମାଣିତ ହେଉଛି । ଲେଖକ ଶୁଭ କର୍ମା ମଙ୍ଗଳ ନୁହନ୍ତି । ଦ୍ୱିତୀୟାଧିପତି (ଚନ୍ଦ୍ର), ଏକାଦଶାଧିପତି (ମଙ୍ଗଳ) ଏବଂ କଳତ୍ରାଧିପତି (ବୃହସ୍ପତି) ଲଗ୍ନ କେନ୍ଦ୍ରବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ପରସ୍ପରଠାରୁ ମଧ୍ୟ କେନ୍ଦ୍ରରେ ଅବସ୍ଥାନ କରନ୍ତି । ନାୟକ ଜାତକରେ ଏ ସମସ୍ତ ଗ୍ରହ ପ୍ରତ୍ୟକ୍ଷ ତଥା ପରୋକ୍ଷଭାବେ ବୈବାହିକ ଭାବ ସମ୍ପର୍କୀୟ ଗ୍ରହ । ସୁତରାଂ ନାୟକ ଜାତକରେ ଏକ ପୂର୍ଣ୍ଣାଙ୍ଗ ପ୍ରେମ ଓ ସମ୍ଭୋଗ ଆଧାରିତ ଦାମ୍ପତ୍ୟ ଜୀବନର ଯୋଗ ରହିଥିବାର ସୂଚିତ ହେଉଛି ।

ସେହିପରି ନାୟକ ଜାତକରେ ମଧ୍ୟ ବୈବାହିକ ଗ୍ରହ ଓ ଗ୍ରହାଧିପତି ଉଚ୍ଚସ୍ଥ ତଥା ଶୁଭସ୍ଥ ଗ୍ରହ ସଂଯୋଗ ଲାଭ କରିଛନ୍ତି । ସେମାନେ (ଶନି,ମଙ୍ଗଳ, ବୁଧ ଓ ଶୁକ୍ର) ପରସ୍ପରଠାରୁ କେନ୍ଦ୍ରରେ ଅବସ୍ଥାନ କରିବା ଯୋଗୁଁ ସମ୍ବନ୍ଧ ଅଧିକ ଦୃଢୀଭୂତ ହୋଇଅଛି । ବିବାହକାରକ ଗ୍ରହ ଶୁକ୍ର ଲଗ୍ନରେ ଉଚ୍ଚସ୍ଥ ଏବଂ ଚନ୍ଦ୍ର ମଧ୍ୟ ଚତୁର୍ଥରେ କେନ୍ଦ୍ରସ୍ଥ ହୋଇଥିବା ଯୋଗୁଁ ସୁସ୍ଥ ଦାଂପତ୍ୟ ଜୀବନ ପାଇଁ ସୌଭାଗ୍ୟଶାଳୀ ଅତି ବଡ଼ ଉତ୍ତମ ଯୋଗ ସୃଷ୍ଟି ହୋଇଛି । ନାୟକ ଏବଂ ନାୟିକା ଉଭୟଙ୍କ ଜାତକରେ ଶୁକ୍ର ଏବଂ ଚନ୍ଦ୍ର କେନ୍ଦ୍ରସ୍ଥ ଓ ଉଚ୍ଚାଦିବର୍ଗ ବଳ ଯୁକ୍ତ ହୋଇଥିବା ବେଳେ ଶୁଭ ଗ୍ରହ ବୃହସ୍ପତି ମଧ୍ୟ ସ୍ୱୋଚ୍ଚରେ କେନ୍ଦ୍ର ଓ କୋଣ ସ୍ଥାନଗତ ହୋଇ ଲଗ୍ନକୁ (ଦୃଷ୍ଟି ସମ୍ବନ୍ଧ ଯୋଗୁଁ) ପ୍ରଭାବିତ କରୁଥିବାର ଲକ୍ଷ୍ୟ କରାଯାଏ । ତେଣୁ ଉଭୟଙ୍କ ଜାତକରେ ଏକାଧିକ ଦାଂପତ୍ୟ ପ୍ରେମର ଯୋଗ ଓ ଘନିଷ୍ଠ ଅନ୍ତର୍ଭାବର ପ୍ରମାଣିତ ହେଉଅଛି । କିନ୍ତୁ ନାୟକ ଜାତକରେ କେନ୍ଦ୍ରାଧିପତି ବୃହସ୍ପତି ମୂଳ ତ୍ରିକୋଣସ୍ଥ ହେଲେ ମଧ୍ୟ କେନ୍ଦ୍ରାଧିପତି ଦୋଷରେ ଦୂଷିତ ଏବଂ ଅଯୋଗ କାରକ ଶନି ଦୁଷ୍ଟ ।

ସେହିପରି ନାୟିକା ଜାତକରେ ସପ୍ତମାଧିପତି ବୁଧ ମଧ୍ୟ ଅଯୋଗ କାରକ ଶନି ଏବଂ ବିବାହକାରକ ମଙ୍ଗଳଙ୍କ କ୍ରୂର ଦୃଷ୍ଟି ମଧ୍ୟରେ ଅବସ୍ଥାନ କରୁଛନ୍ତି । ତେଣୁ ଏହି ଉଭୟର ଯେପରି ଅନେକ ଏବଂ ଏକାଧିକ ଦାଂପତ୍ୟ ପ୍ରେମର ଯୋଗ ରହିଛି, ସେହିପରି ଅନ୍ୟ ଦିଗରୁ ଦେଖିଲେ ପରସ୍ପର ଜନିତ ବିଚ୍ଛେଦାଦି ପୀଡ଼ାରେ ପୀଡ଼ିତ ହେବାର ଯୋଗ ମଧ୍ୟ ରହିଛି । କାବ୍ୟ ତନ୍ତ୍ରିକ ସଂକଳ୍ପ ଗତି ଓ ପରିଣତିରେ ଏହି ଦ୍ୱନ୍ଦ୍ୱ ଯୋଗ ପ୍ରତ୍ୟକ୍ଷ ଭାବେ ଘଟିଥିବାର ଲକ୍ଷ୍ୟ କରାଯାଏ । ତେଣୁ ନାଟକ ରଚନା ପ୍ରସଙ୍ଗରେ ବର୍ଣ୍ଣାଯାଇଥିବା ଜ୍ୟୋତିଷିକ ତଥ୍ୟ ଉଭୟ କାବ୍ୟ ଓ ଶାସ୍ତ୍ରୀୟ ଦୃଷ୍ଟିରୁ ଯାନ୍ତ୍ରିକ ଅଭାବ ପ୍ରମାଣିତ ହେଉଅଛି । କେତେକ କେତେକ ସ୍ଥଳ ଅଥବା ସାଧାରଣ ଶାସ୍ତ୍ରୀୟ ପ୍ରମାଣ ଦ୍ୱାରା କବି ଉଭୟ ଜାତକରେ ଯେଉଁ ସଂସ୍ଥିତି ଯୋଗର ସଂରଚନା କରିଛନ୍ତି, ତାହା ଜ୍ୟୋତିଷର ସର୍ବଶେଷ କଥା ସର୍ବଶ୍ରେଷ୍ଠ ସିଦ୍ଧାନ୍ତ ନୁହେଁ । ସେପରିକି ସୁନା ଜାନ୍ତୁଯୁକ୍ତ ବୋଲି ସବୁ ଜାନ୍ତୁଯୁକ୍ତ ବସ୍ତୁକୁ ସୁନା ଭାବେ ଗ୍ରହଣ କରାଯାଇ ନ ପାରେ । ଏଠାରେ କବି ନାୟକ ନାୟିକାର ଜନ୍ମ ତିଥି,

ନକ୍ଷତ୍ର, ରାଶି, ମାସ, ଲଗ୍ନ ଓ ଗ୍ରହାଦିଙ୍କ ସ୍ୱଭାବଗତ ଅବସ୍ଥିତିରେ ଯେଉଁ ତାତ୍ପର୍ଯ୍ୟ ପ୍ରଦାନ କରନ୍ତି, ତାହା ଶାସ୍ତ୍ରୀୟ ଦୃଷ୍ଟିରୁ ତାତ୍ତ୍ୱିକ ନିଶ୍ଚୟ। ତେବେ ଏ ସବୁର ପ୍ରତିଷ୍ଠା ବା ଫଳ ପ୍ରାପ୍ତି ଗ୍ରହାଦିଙ୍କ କେତେକ ବିଶେଷ ଅଥଚ ସୂକ୍ଷ୍ମ ଯୋଗାଯୋଗର ଅପେକ୍ଷା ରଖେ। କାରଣ ଫଳିତ ଜ୍ୟୋତିଷର ଫଳାଦେଶ ସର୍ବଦା ସୂକ୍ଷ୍ମ ଗଣନା ଓ ତାହାର ଅନୁସନ୍ଧାନ ସାପେକ୍ଷ। ଉଦାହରଣ ସ୍ୱରୂପ ନାୟିକ ପୃଷ୍ଠକେତୁ ମାଘ କୃଷ୍ଣ ପଞ୍ଚମୀ ତିଥିରେ ଜନ୍ମ ହୋଇଥିବା ଯୋଗୁଁ ତପୀ ଓ ଭଗବଦ୍‌ପ୍ରେମୀ ହୋଇଛନ୍ତି ବୋଲି କବି ଯେଉଁ ତାତ୍ପର୍ଯ୍ୟ ପ୍ରଦାନ କରିଛନ୍ତି ତାହା ଅବଶ୍ୟ ଶାସ୍ତ୍ର ସିଦ୍ଧ। (ଯେହେତୁ ବହୁ ତପୀ ଓ ଭଗବଦ୍‌ପ୍ରେମୀ ଏ ମାସରେ ଜନ୍ମ ଲାଭ କରିଥିବାର ନଜିର ଓ ଶାସ୍ତ୍ରୀୟ ପ୍ରମାଣ ରହିଛି)। ତେବେ ଜଣେ ତପୀ ଓ ପୁଣ୍ୟାତ୍ମା ହେବା ପାଇଁ କେବଳ ଏତିକି ଯଥେଷ୍ଟ ନୁହେଁ। ଏଥିପାଇଁ ଜାତକରେ କେତେକ ବିଶେଷ ଯୋଗର ପ୍ରୟୋଜନ ରହିଛି। ଶଂସିତ ଜାତକରେ ଧର୍ମ ଓ କର୍ମାଧିପତିଙ୍କ ସୁଗମ ସମ୍ପ୍ରୀତି ଯୋଗୁଁ ଏହି ବିଶେଷ ଯୋଗ ନିଶ୍ଚିତଭାବେ ଥିବାର ଜଣାଯାଏ। କିନ୍ତୁ ଏ ସବୁର ଉପସ୍ଥାପନ ପାଇଁ ବିଶେଷଣ ସାପେକ୍ଷ ହୋଇଥିବା ଯୋଗୁଁ ଆଲୋଚ୍ୟ ପ୍ରବନ୍ଧରେ କବି କେତେକ ସାଧାରଣ ଅଥଚ ଶାସ୍ତ୍ର ସମ୍ମତ ପ୍ରମାଣ ମାଧ୍ୟମରେ ଏହି ବିଶେଷ ଯୋଗର ଆଭାସ ମାତ୍ର ପ୍ରଦାନ କରିଛନ୍ତି।

ପୁଣି 'କୃଷ୍ଣ ପାହା ଦୂତ ପଥୀ। କୃଷ୍ଣ ପଞ୍ଚମୀ ଯେ ତିଥି' କମ୍ଭ। 'ତପାଳରେ ଯେଣୁ ପ୍ରାପ୍ତ। ତପା ମାସରେ ତପୋକ୍ତ।' "ଇତ୍ୟାଦି ଉକ୍ତିବାରେ ଯେଉଁ ପଦ ସଂଯୋଜନାଗତ ସୌକୁମାର୍ଯ୍ୟ ଓ ଚମତ୍କୃତି ସୃଷ୍ଟି ହୋଇଛି, ତାହା ଦୃଷ୍ଟିରୁ ଅନ୍ୟଥା ସମ୍ଭବ ନୁହେଁ। ଏହି ପରିପ୍ରେକ୍ଷୀରେ ଜ୍ୟୋତିଷିକ ତଥ୍ୟର ସବିଶେଷ ବିଶ୍ଳେଷଣ କାବ୍ୟ ସୌନ୍ଦର୍ଯ୍ୟର ପରିପନ୍ଥୀ ନିଶ୍ଚୟ। ତେଣୁ ସବୁକୁ ସନ୍ଧାନ କରି ସ୍ୱୀୟ ସୀମା ଓ ସଂଧାନ ପ୍ରତି ସଜାଗ ରହି ସ୍ଥୂଳ ହେଲେ ମଧ୍ୟ ଶାସ୍ତ୍ର ସମ୍ମତ ପ୍ରମାଣ ମାଧ୍ୟମରେ ସୂକ୍ଷ୍ମ ଗଣନାର ଯେଉଁ ଆଭାସ ପ୍ରଦାନ କରିଛନ୍ତି ତା'ର ଅଭିବ୍ୟଞ୍ଜନା ସୁଦୂର ପ୍ରସାରୀ ଥିବାର ଲକ୍ଷ୍ୟ କରାଯାଏ।

ଭାଗ୍ୟ ନାୟକ ସର୍ବ ବିଦ୍ୟା ଦକ୍ଷ ଏକ ଗୁଣୀ ଏବଂ ଅନୁପମ ବ୍ୟକ୍ତି ଭାବେ କାବ୍ୟରେ ବର୍ଣ୍ଣିତ ହୋଇଛନ୍ତି । ସେହିପରି ଭାଗ୍ୟ ନାୟିକା ମଧ୍ୟ ସର୍ବ ଗୁଣ ସମ୍ପନ୍ନା ଏକ ଅସାମାନ୍ୟ ସୁନ୍ଦରୀ ରମଣୀ ଅଟନ୍ତି । ମାତ୍ର ପ୍ରଭୁଙ୍କ ଦାଂପତ୍ୟ ବିଳାସ ହିଁ ଉଭୟଙ୍କ ଜୀବନର ଏକ ମାତ୍ର ଲକ୍ଷ୍ୟ । ନାୟକ ନାୟିକାଙ୍କ ଏତାଦୃଶ ଲକ୍ଷ୍ୟ ଏବଂ ଲକ୍ଷଣ ଆଲୋଚ୍ୟ ଜାତକ ଦୁଇଟିର ଗ୍ରହ ସଂସ୍ଥାନ ଦ୍ୱାରା ପୂର୍ଣ୍ଣ ମାତ୍ରାରେ ଅନୁମୋଦିତ ହୋଇଅଛି । ଜାତକ ଦୁଇଟିର ବୈବାହିକ ସମ୍ବନ୍ଧ କାବ୍ୟରେ କିପରି ଅଲଙ୍କୃତ ଭାବେ ପ୍ରତିଫଳିତ ହୋଇଛି, ତାହା ପୂର୍ବରୁ ସୂଚିତ ହୋଇଛି । ବର୍ତ୍ତମାନ ସେମାନଙ୍କ ବ୍ୟକ୍ତିତ୍ୱର କେତେକ ଉଲ୍ଲେଖଯୋଗ୍ୟ ଦିଗକୁ ଦୃଷ୍ଟି କରାଯାଇ ପାରେ । ଭାଗ୍ୟ ନାୟିକା ଦିବ୍ୟଲୋକରୁ ଆସିବା କଥା କାବ୍ୟରେ ଅବର୍ଣ୍ଣ୍ୟ ଏକ ପ୍ରସିଦ୍ଧ ଘଟଣା । ତେବେ ନାୟିକା ଜାତକର ମଧ୍ୟ ଏହାର ଚିତ୍ରିତା ଅନୁପୂର୍ଣ୍ଣ ରହିଛି । ଜାତକରେ ପଞ୍ଚମ ଓ ନବମ ଭାବ ଯଥାକ୍ରମେ ପୂର୍ବ ପୁଣ୍ୟ ଓ ପୂର୍ବ ଜନ୍ମର ସ୍ଥାନ । ଏଠାରେ ପଞ୍ଚମାଧିପତି ଚନ୍ଦ୍ର କେନ୍ଦ୍ରସ୍ଥ ଏବଂ ନବମାଧିପତି ମଙ୍ଗଳ ଉଚ୍ଚ ସ୍ଥାନରେ ଅବସ୍ଥାନ କରିବା ଫଳରେ ଜାତକ ଉତ୍ତମ ଲୋକରୁ ପୂର୍ବ ସୁକୃତି ନେଇ ଜନ୍ମ ନେଇଥିବାର ପ୍ରମାଣିତ ହୋଇଅଛି । ଏହି ଜାତକରେ ରବି, ମଙ୍ଗଳ, ଶୁକ୍ର ଏବଂ ଶନି ଏପରି ଚାରିଗୋଟି ଗ୍ରହ ଉଚ୍ଚ ସ୍ଥାନ ଲାଭ କରିଛନ୍ତି । ଭାଗ୍ୟାଧିପତି ମଙ୍ଗଳ ଏବଂ କର୍ମାଧିପତି ବୃହସ୍ପତି ମଧ୍ୟ ପ୍ରଭାବଶାଳୀ ଭାବରେ ଅବସ୍ଥାପିତ ହୋଇଛନ୍ତି । ଭାଗ୍ୟ ସ୍ଥାନଗତ ବୃହସ୍ପତି ଲଗ୍ନରେ ଉଚ୍ଚସ୍ଥ ହୋଇଥିବା ଶୁକ୍ରଙ୍କୁ ପୂର୍ଣ୍ଣ ଦୃଷ୍ଟିରେ ଦେଖିବା ଫଳରେ ଜାତକ ଅନୁପମ ରୂପବତୀ, ଗୁଣବତୀ, ସତୀ, ସାଧ୍ୱୀ ଇତ୍ୟାଦି ସର୍ବବିଧ ନାରୀ ସୁଲଭ ଗୁଣରେ ସମ୍ପୂର୍ଣ୍ଣା ଥିବାର ପ୍ରମାଣିତ ହେଉଛି । ଜାତକରେ ବହୁବିଧ ରାଜଯୋଗ ଓ ଅନ୍ୟାନ୍ୟ ଉତ୍ତମ ଯୋଗ ସୃଷ୍ଟି ହୋଇଥିବାର ମଧ୍ୟ ଲକ୍ଷ୍ୟ କରାଯାଏ । ତେଣୁ ଜାତକ ସର୍ବବିଧ ସୁଖ ଓ ଐଶ୍ୱର୍ଯ୍ୟ ଅବଲୀଳା କ୍ରମେ ପ୍ରାପ୍ତି ହେବାର ସୂଚିତ ହେଉଛି ।

ସେହିପରି ନାୟକ ଜାତକର ଭାଗ୍ୟ ଓ କର୍ମ ପତି ପଞ୍ଚମ କୋଣ ଏବଂ ସପ୍ତମ କେନ୍ଦ୍ରରେ ଯଥାକ୍ରମେ ସ୍ଥିତ

ଏବଂ ମୂଳତ୍ରିକୋଣ କ୍ଷେତ୍ରବର୍ତ୍ତୀ ହୋଇଛନ୍ତି । ମିଥୁନ ଲଗ୍ନକୁ ଭାଗ୍ୟ ଓ କର୍ମପତିଙ୍କ ସମ୍ବନ୍ଧ ବିଶେଷ ଯୋଗକାରକ ହୋଇ ନ ଥିବା ଯୋଗୁଁ କବି ଭାଗ୍ୟ ଓ କର୍ମପତିଙ୍କୁ ପୃଥକ ଭାବେ ବଳଯୁକ୍ତ କରାଇଛନ୍ତି । ଏ ଲଗ୍ନ ପ୍ରତି ଅତ୍ୟନ୍ତ ଶୁଭପ୍ରଦ ଗ୍ରହ ଶୁକ୍ର ଦଶମ କେନ୍ଦ୍ରରେ ତୁଙ୍ଗୀ ହୋଇ ଶକ୍ତି ଓ କ୍ଷମତାଧାରକ ଗ୍ରହ ଅଙ୍ଗାରକ ବା ମଙ୍ଗଳଙ୍କ ସହ ସହାବସ୍ଥାନ କରୁଛନ୍ତି । ଏଠାରେ ଧନପତି ଚନ୍ଦ୍ର ଚତୁର୍ଥ କେନ୍ଦ୍ରରେ ରହି ଦଶମରେ ଥିବା ଶୁକ୍ର ମଙ୍ଗଳଙ୍କ ସହ ଦୃଷ୍ଟି-ବିନିମୟ ଯୋଗ ସ୍ଥାପନ କରିଅଛନ୍ତି । ଏହା ବ୍ୟତୀତ ପଞ୍ଚ ମହା ପୁରୁଷ ଯୋଗ ମଧ୍ୟରୁ ଏ ଜାତକରେ ଏକାଦିକ୍ରମେ 'ମାଳବ୍ୟ' 'ହଂସ' ଏବଂ 'ଶଶକ' ଏପରି ତିନୋଟି ମହାପୁରୁଷ ଯୋଗ ସହ 'ଗଜକେଶରୀ' 'ଶ୍ରେଷ୍ଠ ସିଂହାସନ' ପ୍ରଭୃତି ଅସଂଖ୍ୟ ଉତ୍ତମ ଯୋଗ ସୃଷ୍ଟି ହୋଇଛି । ୮ । ତେଣୁ ଜାତକ ଯେ ଏକାଧାରରେ ବିଦ୍ୱାନ ପ୍ରେମିକ, ରସିକ, ଦାତା, ମାନୀ, ଗୁଣୀ, ଧୀର, ଉଦାର ଏବଂ ସବୁ କିଛି ଏ କଥା ଯେକୌଣସି ଜ୍ୟୋତିଷ ଜାଣିଥିବା ବ୍ୟକ୍ତି କଳ୍ପିତ ଜାତକରୁ ସହଜରେ କଳନା କରି ପାରିବ ।

ସୁତରାଂ ଆଲୋଚ୍ୟ ଜାତକ ଦୁଇଟି ଯେ କାବ୍ୟ-ବର୍ଣ୍ଣିତ ନାୟକ ନାୟିକାଙ୍କ ଜୀବନ ଇତିହାସର ଦୁଇଟି ନିର୍ଭୁଲ ଜ୍ୟୋତିଷିକ ନକ୍ସା, ଏକଥା ନିର୍ବିବାଦରେ ପ୍ରମାଣିତ ହେଉଅଛି ।

ଏତଏବ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କବିଙ୍କ ଜାତକ ରଚନା ଏକ ପ୍ରାସଙ୍ଗିକ ବ୍ୟାପାର ହେଲେ ମଧ୍ୟ ଏହାର କାବ୍ୟିକ ଉପଯୋଗିତା ତଥା ଶାସ୍ତ୍ରୀୟ ଅଭିବ୍ୟକ୍ତିର ବ୍ୟଞ୍ଜନା ସୁଦୂର ପ୍ରସାରୀ ନିଶ୍ଚୟ ।



# ପାଦଟୀକା

(୧) ଧର୍ମାର୍ଥ କାମ ମୋକ୍ଷାଣାଂ ଦାରାଃ ସଂପ୍ରାପ୍ତ ହେତବ
ପରୀକ୍ଷେତ୍ ପ୍ରଯତ୍ନେନ ପୂର୍ବମେବ ନର ତ୍ରିଭାତ୍ ।
ନାୟକ ଶ୍ୟାମ ସୁନ୍ଦର-ସବ-ଉଦ୍ବାହ ପ୍ରକରଣ ।
ଜ୍ୟୋତିଷ ସାର ସଂଗ୍ରହ ପୃ : ୯୯

(୨) ପଞ୍ଚ ପାଣିଗ୍ରହେ ଦୋଷା ବର୍ଜ୍ଜନୀୟାଃ ପ୍ରୟତ୍ନତଃ ।
ଦାରିଦ୍ର୍ୟ କୁଳଟା ମୃତ୍ୟୁ ବୈଧବ୍ୟ ସୁତହାନୟଃ ॥
ନାୟକ ଶ୍ୟାମ ସୁନ୍ଦର-ସଙ୍କ.-ଜ୍ୟୋତିଷ ସାର ସଂଗ୍ରହ ପୃ ୧୨୦

(୩) ଖାଇରକାନ ଜ୍ୟୋତିଷ ରଣାରବ, ସୌଭାଗ୍ୟଶାଳୀନୀ ଯୋଗ :
ଜ୍ୟୋତିଃଶାସ୍ତ୍ର ରତ୍ନାବଳୀ, ପୃଷ୍ଠା-୨୩୮ ଦ୍ରଷ୍ଟବ୍ୟ

(୪) ଖୁଦାବାସ ମଦନ ମୋହନ, ସପ୍ତମ ଭାବ ଆଲୋଚନା :
ଭାଗ୍ୟଚକ୍ର ୨ୟ ଭାଗ । ପୃଷ୍ଠା ୧୨୭ ଦ୍ରଷ୍ଟବ୍ୟ ।

(୫) 'ମନ ଜାଣିବାକୁ ପ୍ରିୟା ସମ ଜଣେ ଖୋଜିଲେ ନ ଥିବ କାହିଁ,
ମୋ ମନ ଖେଳୁଛି ପ୍ରୀତି ଘେନିବାକୁ ତାହାର ସମାନ ସେହି ।'
—ଲାବଣ୍ୟବତୀ

୬ । 'ପ୍ରାଣବନ୍ଧୁ ! ନାରୀ ପୁରୁଷ ଦୁଇରେ
ଯେଣ ଏକା ଜୀବନ କେବଳ ତନୁ ଭିନ୍ନ
ଯୋଗେ ଏକଇ ହୋଇରେ, ପ୍ରାଣବନ୍ଧୁ !—ଲା : ବ :

୭କ । ନାୟକଙ୍କ ଜାତକ

ପୁଷ୍ପ ବଣିକ-ନନ୍ଦନ । ପୁଷ୍ୟରେ ଜନ୍ମଧନ ଯେ । ୪ ।
ତପାଳରେ ଯେଣୁ ପ୍ରାପ୍ତ । ତଥା ମାସରେ ସମ୍ପ୍ତ ।/
କୃଷ୍ଣ ଯାହା ହୃଦେପତୀ । କୃଷ୍ଣ ପଞ୍ଚମୀ ଯେ ତିଥି । ୫ ।
ଶିଅଳର କର୍ମକର୍ତ୍ତା । ତଥା ଜନ୍ମ ସ୍ଵଦେଶ ।

ଜନ୍ମକାଳ ସମା ମୋକ୍ଷ । କନ୍ୟା ଚନ୍ଦ୍ର ଖ୍ୟାତ ହୋଇ ଯେ । ୬ ।
ମିଥୁନରେ ସଦା ଶତ୍ରୁ । ମିଥୁନ ଲଗ୍ନ ଜାତକ ।
ସିଂହ ଷଷ୍ଠି ଯୁରେ ସନ୍ତୁ । ସିଂହରେ ଭୃଷ୍ଣରେ ରାହୁ । ୭ ।
ଚଞ୍ଚଳ ଭାଗେ ଯେ ଅରି । ଷଷ୍ଠେ ଶୁକ୍ର ଶତ୍ରୁ ଶଶୀ ।
ଗୁରୁ ଗୁଣ ଖ୍ୟାତ କରେ । ଗୁରୁ ସପ୍ତମେ ଧନୁରେ ଯେ । ୮ ।
ବୁଧସାର ଅଷ୍ଟମରେ । ବୁଧ ସହିତ ମକରେ ।
ମଙ୍ଗଳ ପ୍ରଭ ଯେ ଉଚ୍ଚ । ମଙ୍ଗଳ ଶୁକ୍ର ଏକତ୍ର ।
ରବିଶୁକ୍ର ଦଶମେ ମୀନେ । ରବିଶୁକ୍ର ଜନ୍ମ ମୀନରେ । ୧୦ ।

୩୨ ଛନ୍ଦ-କେ:ବ୍ରୁ:ସୁ:

ବୈଶାଖ ମାସରେ ଜାତ । ବୈଶାଖରେ ଜନ୍ମ ହେଲା ।
ପଞ୍ଚମୀ ତିଥି ଏ ଯୋଗ । ପଞ୍ଚଶତ ଜୀବଦାତା ଯେ । ୧୨ ।
ଆରଦ୍ରାର ସର୍ବ ଚତ୍ର । ଆର୍ଦ୍ରା ନକ୍ଷତ୍ର ଯୁକ୍ତ
ମୀନ ଅନୁକୂଳେ ବୃଷ୍ଟି । ମୀନ ଲଗ୍ନେ ଜନ୍ମ ହୋଇ ଯେ । ୧୩ ।
ଜାତ କାଳେ ଅଗୋଚର । ଜାତ୍ୟ ଲଗ୍ନରେ ସଂଯୋଗ
ସୂର ମୋକ୍ଷମା ଦ୍ୱିତୀୟେ । ସୂର ବୁଧ ମେଷୋଦୟେ ଯେ ।
ଚତୁର୍ଥ ଶୀଘ୍ର ସାଧୁ । ଚତୁର୍ଥେ ମିଥୁନେ ରାହୁ ।
କକଣ ହୃଦଜଗୁରୁ । କର୍କଟେ ପଞ୍ଚମେ ଗୁରୁ ଯେ । ୧୪ ।
ଛମ ଛତ ବାସ ସେନ୍ଦ୍ରା । ଛମ ସିଂହେ ଷଷ୍ଠେ ଶନି ।
ଭୁଜ ପାଳ ଭକ୍ତ ମନ । ଭୁଜାରେ ଅଷ୍ଟମେ ମନ । ୧୬ ।
ଏକା ମଙ୍ଗଳ ସୃଷ୍ଟିରେ । ଏକାଦଶେ ସେ ମକରେ
ଜଗପନ ଚୋଷ ବୃଷ୍ଟି । ଜଗନ୍ନ ଜାତକ ସୃଷ୍ଟି ଯେ । ୧୭ ।

୩୨ ଛନ୍ଦ

୬ ଗ) ପଞ୍ଚତଣ ମତରେ ଥିବା 'କର୍କଟେ ପଞ୍ଚମେ ଗୁରୁ' ସ୍ଥାନରେ 'କର୍କଟ ପଞ୍ଚମେ ଗୁରୁ' ହେବ । ଯେହେତୁ ନାୟକ ଓ ନାୟିକା ଉଭୟଙ୍କ ଜାତକରେ ରାହୁ ଓ ଶନି ସ୍ଥାନ ପରିବର୍ତ୍ତନ ନ କରି ଅଭିନ୍ନ ରାଶିରେ ଅବସ୍ଥାନ କରୁଛନ୍ତି । ତେଣୁ ପତି ପତ୍ନୀ ମଧ୍ୟରେ ସାଧାରଣତଃ ଯେଉଁଭଳି ବୟସଗତ ବ୍ୟବଧାନ ରହିବା କଥା ଏ କ୍ଷେତ୍ରରେ ରହୁ ନାହିଁ । ଜାତକ ଦୁଇଟିରେ ରବି ଓ ମଙ୍ଗଳଙ୍କ ଅବସ୍ଥିତିରୁ ଜଣାଯାଏ ଯେ

ନାୟକ ନାୟିକାଙ୍କଠାରୁ ମାତ୍ର ଏକବର୍ଷ ଛଅମାସ (ପ୍ରାୟ) ବୟୋଜ୍ୟେଷ୍ଠ । ଏହି ପରିପ୍ରେକ୍ଷୀରେ ନାୟିକା ଜାତକରେ ବୃହସ୍ପତି କର୍କଟ ରାଶିରେ ଅବସ୍ଥାନତ ହେବା ସମ୍ଭବ ନୁହେଁ । ତେଣୁ ସମ୍ଭବତଃ 'କର୍କଟ' ସ୍ଥାନରେ 'କର୍କଟେ' ଲିଖନଗତ ତ୍ରୁଟି ଯୋଗୁଁ ହୋଇ ଥାଇ ପାରେ କର୍କଟ ପଞ୍ଚମେ କହିଲେ କର୍କଟ ରାଶିକୁ ନ ବୁଝାଇ କର୍କଟ ରାଶିର ପଞ୍ଚମ ରାଶି ଅର୍ଥାତ୍ ବିଛା ରାଶିକୁ ବୁଝାଇବ । ଏହିପରି ଆଉ ଏକ ଦୃଷ୍ଟାନ୍ତ ଭଞ୍ଜଙ୍କ ଅନ୍ୟତମ କାବ୍ୟ ବୈଦେହୀଶ ବିଳାସରେ ମଧ୍ୟ ଦେଖିବାକୁ ମିଳେ । ଏହି କାବ୍ୟର ସପ୍ତଦଶ ଛାନ୍ଦ ଚତୁର୍ଥ ପଦରେ ଥିବା 'ବୃହସ୍ପତି ରାଶି ଅଷ୍ଟମେ ତପସି'କୁ ଅଷ୍ଟମ ରାଶି ବା ବିଛାରାଶି ଭାବେ ଅର୍ଥ ନ କରି ବୃହସ୍ପତିଙ୍କ ସ୍ୱଗୃହ ଧନୁରାଶିର ଅଷ୍ଟମ ରାଶି ଅର୍ଥାତ୍ କର୍କଟ ରାଶି ଭାବେ ଅର୍ଥ କରାଯାଏ ।

ତେଣୁ ଏଠାରେ ମଧ୍ୟ କର୍କଟ ରାଶିର ପଞ୍ଚମ ରାଶି ଭାବେ ଗ୍ରହଣ କରିବା ଯୁକ୍ତିସଙ୍ଗତ । ଏଠାରେ ନାୟକ ଜାତକରେ ବୃହସ୍ପତି ଅସ୍ତଙ୍ଗତ ଓ ନାୟିକା ଜାତକରେ ବକ୍ରୀ ହୋଇଥିବାର ଆଶା କରାଯାଏ ।

## ୮. ପଞ୍ଚମହାପୁରୁଷ ଯୋଗ :-

ଶୁକ୍ର, ମଙ୍ଗଳ, ଶନି, ବୃହସ୍ପତି ଓ ବୁଧ—ଏମାନେ ଉଚ୍ଚସ୍ଥ ବା ସ୍ୱଗୃହୀ ହୋଇ କେନ୍ଦ୍ରସ୍ଥ ହେଲେ ଶୁକ୍ର ଦ୍ୱାରା 'ମାଳବ', ମଙ୍ଗଳ ଦ୍ୱାରା 'ରୁଚକ', ଶନି ଦ୍ୱାରା 'ଶଶକ', ବୃହସ୍ପତି ଦ୍ୱାରା 'ହଂସ' ଏବଂ ବୁଧ ଦ୍ୱାରା 'ଭଦ୍ର' ଯୋଗ ହୁଏ 'ମାଳବ' ଯୋଗ ଜାତ ପୁରୁଷ ସୁଗଠିତ ବଳଯୁକ୍ତ, ଦୃଢମନା, ଧନୀ, ସ୍ତ୍ରୀ ପୁତ୍ରାଦିରେ ସୁଖୀ, ବାହାନଯୁକ୍ତ, ଖ୍ୟାତନାମା, ପଣ୍ଡିତ ଓ ଜ୍ଞାନୀ ହୁଏ । ଏଠାରେ ଉଭୟ ଜାତକରେ ଏ ଯୋଗ ରହିଛି ।

'ଶଶକ' ଯୋଗଧାରୀ ବ୍ୟକ୍ତି ସଭେଦ ଚଣ୍ଡତ୍ୱଯୁକ୍ତ, ଦୁଷ୍ଟ, ପରସ୍ୱ ହରଣକାରୀ, ସୁଭୃତ୍ୟ ଯୁକ୍ତ, ସର୍ବଜନ ପ୍ରଶଂସିତ, ଗ୍ରାମାଧିପ, ସୁଖ ଯୁକ୍ତ ଓ ରଜ ତୁଲ୍ୟ ହୁଏ ।

'ହଂସ' ଯୋଗ ଜାତ ମାନବ ସୁନ୍ଦର, ସ୍ୱାସ୍ଥ୍ୟବାନ୍, ଲୋକପ୍ରିୟ, ଧାର୍ମିକ ଏବଂ ଶୁଦ୍ଧ ଚିତ୍ତ ବଶିଷ୍ଟ ହୁଏ ।

'ରୁଚକ' ଯୋଗରେ ମାନବ ବଳିଷ୍ଠଦେହୀ, ଖ୍ୟାତନାମା, ସେନାଧ୍ୟକ୍ଷ, ବଦାନ୍ୟ ଓ ଭକ୍ଷଣଶୀଳ ହୁଏ ।

ଭଦ୍ରଯୋଗ ଜାତ ବ୍ୟକ୍ତି ଦୀର୍ଘଜୀବୀ, ତୀକ୍ଷ୍ଣବୁଦ୍ଧି ଯୁକ୍ତ, ବଳବାନ, ନିର୍ମଳଚେତା, ବହୁ ଧନ ଯୁକ୍ତ ଏବଂ ରାଜା ତୁଲ୍ୟ ହୁଏ ।

ଏହି ଯୋଗ ଗୁଡ଼ିକ କେବଳ ଲଗ୍ନଠାରୁ କେନ୍ଦ୍ରଗତ ନୁହେଁ ଏପରିକି ଚନ୍ଦ୍ରଠାରୁ କେନ୍ଦ୍ର ଗତ ହେଲେ ମଧ୍ୟ ହେବ । ପୁଣି ଏ ସବୁ ତାରା ଗ୍ରହ ଉଚ୍ଚାଦି ବଳଯୁକ୍ତ ହୋଇ ଲଗ୍ନର କୋଣବର୍ତ୍ତୀ ହୋଇ ମଧ୍ୟ ପଞ୍ଚ ମହାପୁରୁଷ ଯୋଗ ସୃଷ୍ଟି କରୁଥିବା କଥା ଭି· ଏ· କେ· ଅୟାର ସ୍ୱୀୟ Everyday Astrology ରେ ଉଲ୍ଲେଖ କରିଛନ୍ତି ।

## ଗଜକେଶରୀ ଯୋଗ :-

ବୃହସ୍ପତି ଚନ୍ଦ୍ରର କେନ୍ଦ୍ରରେ ରହିଲେ ଏହି ଯୋଗ ହୁଏ । ଏହା ଜାତକକୁ ବୁଦ୍ଧି ବିଦ୍ୟା, ପ୍ରତାପ, ବାକ୍‌ଶକ୍ତି ମର୍ଯ୍ୟାଦ ବହୁବିଧ ସ୍ୱଗୁଣ ଦେଇଥାଏ ।

## କ୍ଷେତ୍ର ସିଂହାସନ ଯୋଗ :-

ଧର୍ମାଧିପତି କେନ୍ଦ୍ର, କୋଣ ବା ଦ୍ୱିତୀୟରେ ବଳବାନ ରହେ ଥିଲେ ଏ ଯୋଗ ହୁଏ । ଏ ଯୋଗ ନାୟକ ଓ ନାୟିକା ଉଭୟଙ୍କ ଜାତକରେ ସୃଷ୍ଟି ହୋଇଅଛି ।



# ଉପେନ୍ଦ୍ର ଭଞ୍ଜଙ୍କ ପ୍ରଥମ କାବ୍ୟ-ଭାବବତୀ

ଶ୍ରୀ ମାଗୁଣି ଦାଶ

କବି ସାର୍ବଭୌମ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜଧାନୀ କୁଳାଡ଼ଗଡ଼ରେ ୧୬୭୦ ମସିହାରେ ଏକ ନୈସର୍ଗିକ ମଞ୍ଜୁଳ ପରିବେଶ ମଧ୍ୟରେ ରାଜା ନୀଳକଣ୍ଠ ଭଞ୍ଜଙ୍କର ଜ୍ୟେଷ୍ଠ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ ।

ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ରାଜକବି ଧନଞ୍ଜୟ ଭଞ୍ଜ ଜଣେ ଉଚ୍ଚକୋଟିର କବି ଥିଲେ । ସେ ସାହିତ୍ୟ ସାଧନାରେ ଅଧିକ ନିୟୋଜିତ ହୋଇ ରହିବା ପାଇଁ ନିଜର କନିଷ୍ଠ ଭ୍ରାତା ଗୋବିନ୍ଦଭଞ୍ଜଙ୍କୁ ପାଟରାଜା ପଦରେ ନିଯୁକ୍ତ କରି ରାଜ୍ୟ ପରିଚାଳନାର ସମସ୍ତ ଭାର ତାଙ୍କ ଉପରେ ନ୍ୟସ୍ତ କରିଥିଲେ ।

ଉପେନ୍ଦ୍ର ଭଞ୍ଜ ଶୈଶବାବସ୍ଥାରେ ପିତାମହ ଧନଞ୍ଜୟ ଭଞ୍ଜଙ୍କ କବି ପ୍ରତିଭାରେ ପ୍ରଭାବିତ ହୋଇ, ଜଣେ ବଡ଼ କବି ହେବା ପାଇଁ ଇଚ୍ଛା କରିଥିଲେ । ଧନଞ୍ଜୟ ଭଞ୍ଜ ବାଲ୍ୟକାଳରୁ ଉପେନ୍ଦ୍ର ଭଞ୍ଜଙ୍କଠାରେ ମହନୀୟ ପ୍ରତିଭାର ସୂଚନା ପାଇ କୁଳାଡ଼ ଗଡ଼କୁ ବହୁ ବଡ଼ ବଡ଼ ପଣ୍ଡିତମାନଙ୍କୁ ଡକାଇ ଆଣି ଉପେନ୍ଦ୍ରଙ୍କର ଶିକ୍ଷାର ଭାର ସେମାନଙ୍କ ହସ୍ତରେ ଅର୍ପଣ କରିଥିଲେ ।

ଉପେନ୍ଦ୍ର ଭଞ୍ଜ ଖୁବ୍ କମ୍ ସମୟ ମଧ୍ୟରେ ସଂସ୍କୃତ ସାହିତ୍ୟକୁ ଆୟତ୍ତ କରି ବ୍ୟାକରଣ, କାବ୍ୟ, ନାଟକ, ଅଳଙ୍କାର, ଦର୍ଶନ, ଜ୍ୟୋତିଷ, ବିଜ୍ଞାନ, ଆୟୁର୍ବେଦ, ଶିଳ୍ପ ଇତ୍ୟାଦି ଶାସ୍ତ୍ରରେ ଅସାଧାରଣ ପାଣ୍ଡିତ୍ୟ ଓ ପାରଦର୍ଶିତା ଲାଭ କରିଥିଲେ । ଏହି କଥାକୁ ପ୍ରମାଣିତ କରିବା ପାଇଁ ସେ ରସପଞ୍ଚକ କାବ୍ୟରେ ଲେଖିଛନ୍ତି —

କାବ୍ୟ, ନାଟକ ଅଳଂକାର ଜାତ, କୋଷରେ କେବଳ ବୋଲନ୍ତି ଏ ତ ।
କୋଷାଭିଧାନ, ସାକ୍ଷାତ ଜନ, ଜଗତୁ ଛନ୍ଦ ବନ୍ଧେଁକେ ସମାନ ॥
କଥିତ କୀର୍ତ୍ତି, ଗୀତେ ଏମନ୍ତ, କାଳିଦାସ ବାଣୀ ଅବସ୍ଥ ତୃର୍ତ୍ତି ।
ଛନ୍ଦାପିଙ୍ଗଳ, ଶାସ୍ତ୍ରେ ଅନର୍ଗଳ, କେତେ ପ୍ରବନ୍ଧେ ପୂରାଇ ଭୂତଳ ॥
ବୁଝନ୍ତେ କ୍ଷଣ ଲୋକ ପ୍ରକାଶ, ଜଣ ଗଙ୍ଗ ଦେଶକୁ କୁଳଣ ।

ବଡ଼ ବଡ଼ ପଣ୍ଡିତ ଓ କବିମାନେ ଯେଉଁ ଦୁର୍ଲ୍ଲଭ ମାର୍ଗରେ ଗତି କରିଥିଲେ, ଉପେନ୍ଦ୍ର ଭଞ୍ଜ ସେହି ମାର୍ଗରେ ଗତି କରି ତାହା ଲାଭକରି ପାରିଥିଲେ ବୋଲି ସେ ତାଙ୍କର କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଲେଖିଛନ୍ତି ।

" କହେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବିପୁଂଜ ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚାର"

ଉପେନ୍ଦ୍ର ଭଞ୍ଜ ପିତାମହ ଧନଞ୍ଜୟ ଭଞ୍ଜଙ୍କ ପରାମର୍ଶକ୍ରମେ ଭଞ୍ଜ ରାଜବଂଶର ଇଷ୍ଟଦେବୀ ଦୁର୍ଗା (ବାଟ ଦେବୀ)ଙ୍କ ଶରଣାପନ୍ନ ହୋଇଥିଲେ । ଦେବୀ ଉପେନ୍ଦ୍ର ଭଞ୍ଜଙ୍କୁ ରାମ ତାରକ ମନ୍ତ୍ର ସାଧନା କରି ଜଣେ ଅଦ୍ୱିତୀୟ କବି ହେବା ପାଇଁ ସ୍ୱପ୍ନାଦେଶ କରିଥିଲେ । ଉପେନ୍ଦ୍ର ଭଞ୍ଜ ବହୁ କଷ୍ଟ ଓ ସାଧନା ପରେ ରାମତାରକ ମନ୍ତ୍ର ସିଦ୍ଧିଲାଭ କରିଥିଲେ । ସେ ତାଙ୍କର ବୈଦେହୀଶ ବିଳାସ କାବ୍ୟରେ ଲେଖିଛନ୍ତି ।

"ବନାଇ ରତ୍ନ ଅନୁକରତ, ଶ୍ରେୟ ଗ୍ରହଣ ତାରକ ମନ୍ତ୍ର ।
ସୀତା ଶ୍ରୀରାମ ଚରିତ କୀର୍ତ୍ତି, କୃତେ କଳସ ଯେ ।"

ସେ ଲାବଣ୍ୟବତୀ କାବ୍ୟରେ ଲେଖିଛନ୍ତି :-

"ତାରକ ମନ୍ତ୍ର ପରସାଦେ, ମୋହର କବି ପଣ ଉଦେ ॥

ପୁଣି କୋଟି ବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ଲେଖିଛନ୍ତି :-

"କହେ ଉପେନ୍ଦ୍ର, ମୋ ପ୍ରଭୁ ଶ୍ରୀରାମ, ବୈକୁଣ୍ଠନାଥ ସାକ୍ଷାତ,
ଜାତ କଲେ କ୍ଷୀରାର୍ଣ୍ଣବୁ ସୁଧା ମୋର, ଗୀରାର୍ଣ୍ଣବୁ ରସ ଗୀତ ॥"

ଉପେନ୍ଦ୍ର ଭଞ୍ଜ ରାମ ତାରକମନ୍ତ୍ର ସିଦ୍ଧି ଲାଭ କରିବା ପରେ ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରଭୃତି ବଡ଼ ବଡ଼ କାବ୍ୟ ରଚନା କରିବା ପୂର୍ବରୁ ପ୍ରଥମାବସ୍ଥାରେ କେତୋଟି ଛୋଟ ଛୋଟ କାବ୍ୟ ରଚନା କରିଥିବା ଜଣାଯାଏ । ସର୍ଷିତ ରସବତୀ କାବ୍ୟଟି ସେ ଗୁଡ଼ିକ ମଧ୍ୟରେ ଅନ୍ୟତମ ଏବଂ ପ୍ରଥମ ବୋଲି କୁହାଯାଏ ।

ଉପେନ୍ଦ୍ର ଭଞ୍ଜ ଛନ୍ଦ କାବ୍ୟ ବଳୋଦୟ କାବ୍ୟରେ ସ୍ୱରଚିତ କାବ୍ୟ କବିତା ଗୁଡ଼ିକର ଗୋଟିଏ ସଂକ୍ଷିପ୍ତ ତାଲିକା ଦେଇ ଲେଖିଛନ୍ତି—

ଏଣୁ ଏ କଳ ଓସ୍ତରଇ ଚଉଁ ।
କଳାମ୍ଭୁଁ ଅନେକ ପ୍ରକାଶ ଗୀତେ ॥

× × ×

ଅଶେଷ ଚୌତିଶା ଚୌପଦୀ ।
ଛାନ୍ଦ କେତେ ଯେ କହିବ ସପାଦ ।

ଗାହା ଦୋହା ଷୋଡ଼ଶେ ଛ ପୋଇଁ ।
ଇତ୍ୟାଦି କହନ୍ତୁ ଗଣେ ନାହିଁ ।

× × ×

ରସବତୀ, ମୁକ୍ତାବଳୀ ପ୍ରମାଣ ।
ବରଜ ଲୀଳା ଯେ ଗ୍ରନ୍ଥ ଭୂଷଣ ॥

ଇତ୍ୟାଦି

ଉପେନ୍ଦ୍ର ଭଞ୍ଜଙ୍କର ଅନ୍ୟ କାଳ୍ପନିକ କାବ୍ୟଗୁଡ଼ିକ ପରି ରସବତୀ ମଧ୍ୟ ଗୋଟିଏ କ୍ଷୁଦ୍ର କାଳ୍ପନିକ କାବ୍ୟ । ଏହା ୧୯୩୧ ମସିହାରେ ନୀଳମଣି ମହାପାତ୍ରଙ୍କ ଦ୍ୱାରା ସଙ୍ଗୃହୀତ ହୋଇ କଟକ କାଶିନାଥ ପ୍ରେସରେ ଶ୍ରୀ ଲକ୍ଷ୍ମଣ ସେନାପତିଙ୍କ ଦ୍ୱାରା ପ୍ରଥମଥର ପ୍ରକାଶିତ ହୋଇଥିଲା । ତା ପରେ ଶ୍ରୀ ଜଗନ୍ନାଥ ସିଂହ ଓଡ଼ିଶା ଜଗନ୍ନାଥ କମ୍ପାନି, କଟକ ପକ୍ଷରୁ

୧୯୬୪ ମସିହାରେ ପୁନର୍ବାର ନୂତନ ସଂସ୍କରଣ ରୂପେ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କର ସୁବୋଧିନୀ ଟୀକା ଓ ମୁଖବନ୍ଧ ସହିତ ପ୍ରକାଶ କଲେ । କଟକର ଧର୍ମଗ୍ରନ୍ଥ ଷ୍ଟୋର ମଧ୍ୟ ଏହାକୁ ବାରଂବାର ପ୍ରକାଶ କରି ବିକ୍ରି କରୁଥିବା ଦେଖାଯାଏ ।

ଲାବଣ୍ୟବତୀ କାବ୍ୟଟି ସାତ ଛନ୍ଦ ବିଶିଷ୍ଟ କାବ୍ୟ । ଉପେନ୍ଦ୍ର ଭଞ୍ଜଙ୍କର ଅନ୍ୟ କାଳ୍ପନିକ କାବ୍ୟଗୁଡ଼ିକ ଯେପରି ନାୟିକାର ନାମାନୁସାରେ ନାମକରଣ କରିଅଛନ୍ତି, ଲାବଣ୍ୟବତୀ କାବ୍ୟଟି ମଧ୍ୟ ସେହିପରି ନାୟିକାର ନାମାନୁସାରେ ନାମକରଣ କରିଅଛନ୍ତି ।

କାବ୍ୟର ନାୟକ ହେଉଛନ୍ତି ଶ୍ବେତ ଦେଶ ରାଜକୁମାର (ଶ୍ବେତ ଦେଶ ମହୀସୂରର ଦକ୍ଷିଣ ଭାଗ କାବେରୀ ନଦୀ ତଟବର୍ତ୍ତୀ ଭୂଖଣ୍ଡରେ ଅବସ୍ଥିତ ଥିଲା । ବର୍ତ୍ତମାନ ତାହା କର୍ଣ୍ଣାଟକ ନାମରେ ନାମିତ ହୋଇଅଛି । )

କବି ନାୟକର ପିତା ଓ ମାତାଙ୍କ ନାମ କାବ୍ୟରେ ଉଲ୍ଲେଖ କରିଥିବା ସ୍ଥଳେ, ନାୟକର ନାମ ଉଲ୍ଲେଖ କରି ନାହାନ୍ତି । ନାୟିକାର ନାମ ଉଲ୍ଲେଖ କରିଥିବାରୁ ନାୟକର ନାମ ଅପେକ୍ଷା ନାୟିକାର ନାମକୁ ଅଧିକ ଗୁରୁତ୍ୱ ଦେଇଥିବା ମନେ ହୁଏ ।

## କାବ୍ୟର ବିଷୟବସ୍ତୁ—

କେରଳ ଦେଶର ରାଜା କୁସୁମଶର ଓ ରାଣୀ ଚନ୍ଦ୍ରାବତୀଙ୍କ ଔରସରୁ ଅପୂର୍ବ ସୁନ୍ଦରୀ କନ୍ୟା ଲାବଣ୍ୟବତୀ ଜନ୍ମଲାଭ କଲା । ତାର ରୂପ ଦେଖି ମାତ୍ରରେ ସ୍ବୟଂ ପାର୍ବତୀ, ଲକ୍ଷ୍ମୀ, ଅପ୍ସରାମାନେ ଓ କିନ୍ନରୀମାନେ ସମକକ୍ଷ ହୋଇ ନ ପାରି ଲଜ୍ଜା ଅନୁଭବ କଲେ । ଯୌବନାବସ୍ଥା ପ୍ରାପ୍ତ ହେବା ପରେ କନ୍ୟାର ବିବାହ ପାଇଁ ପିତା କୁସୁମଶର ଉଦ୍ବିଗ୍ନ ହୋଇ ଉଠିଲେ ।

ଶ୍ବେତ ଦେଶର ରାଜା ମଧୁକର ଓ ରାଣୀ ଚନ୍ଦ୍ରାବତୀଙ୍କ ଔରସ ଜାତ ରାଜକୁମାରର ବିବାହ ନିମନ୍ତେ ରାଜା ଚିତ୍ରପଟ ସହ ବିଭିନ୍ନ ଦେଶକୁ

ଦୂତ ପ୍ରେରଣ କଲେ । ଦୂତମାନେ କେରଳ ରାଜ୍ୟରେ ପହଞ୍ଚି ରାଜା, ମନ୍ତ୍ରୀ ଓ ସେମାନଙ୍କୁ ଚିତ୍ରପଟ ଦେଖାଇଲେ । ସମସ୍ତେ ଚିତ୍ରପଟ ଦେଖି ଆନନ୍ଦିତ ହେଲେ । କେରଳ ରାଜା ରାଜକୁମାରୀ ଭାବବତୀର ବିବାହ ପ୍ରସ୍ତାବ ଦେଇ ଶ୍ୱେତ ଦେଶକୁ ଦୂତ ପଠାଇଲେ ।

ଦୂତୀ ମାଳତୀ କେରଳରେ ପ୍ରବେଶ କରି ରାଜକୁମାରଙ୍କର ଚିତ୍ରପଟକୁ ଲୁଗାଗୁଡ଼ାଇ କାଖରେ ଜାକି ଧରିଥିଲେ । ଭାବବତୀର ସଖୀମାନେ ପରିହାସ କରି କାଖରେ କଣ ଧରିଛ ବୋଲି କଣ୍ଟୁ ଛଡ଼ାଇନେଲେ । ଚିତ୍ରପଟଟି ଦେଖି ସମସ୍ତେ ରାଜକୁମାରଙ୍କର ଅପୂର୍ବ ଶୋଭାକୁ ପ୍ରଶଂସା କଲେ । ରାଜଜେମା ଭାବବତୀ ସେହି ଚିତ୍ରପଟକୁ ଦେଖି ସନ୍ତୋଷ ଲାଭ କରିବା ସଙ୍ଗେ ସଙ୍ଗେ ରାଜକୁମାରଙ୍କ ପ୍ରତି ପ୍ରେମାଶକ୍ତ ଓ ସ୍ମରବାଣବଶ ହୋଇ ପଡ଼ିଲେ । ପିତା ଶ୍ୱେତଦେଶକୁ ବିବାହ ପ୍ରସ୍ତାବ ପଠାଇଥିବା କଥା ସଖୀମାନଙ୍କଠାରୁ ଶୁଣି ଆଶ୍ୱସ୍ତ ହେଲେ ।

ତେଣେ ଶ୍ୱେତ ଦେଶର ରାଜକୁମାର ଚିତ୍ରପଟରେ ଭାବବତୀର ଅପୂର୍ବ ଶୋଭା ଦେଖି ମୋହିତ ହେଲେ । ନାୟକ ସହିତ ନାୟିକାର ବିବାହ, ମଧୁଶଯ୍ୟା ବିଧାନ ପରେ କନ୍ୟାକୁ ନେଇ ରାଜକୁମାର ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ନବଦମ୍ପତି ବହୁତ କାଳ ସୁଖରେ ଦିନ କଟାଇଲେ । କେତେ କାଳ ପରେ ପିତୃ ଦିବସ ପଡ଼ିବାରୁ ପିତାଙ୍କ ନିର୍ଦ୍ଦେଶରେ ରାଜକୁମାର ମୃଗୟା କରିବା ପାଇଁ ବନକୁ ଗଲେ । ସେଠାରେ ଗୋଟିଏ ଅସୁରକନ୍ୟା ରାଜକୁମାରଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ହରଣ କରିନେଲା । ଏ ସମ୍ବାଦ ପାଇ ରାଜା ଅତ୍ୟନ୍ତ ଦୁଃଖିତ ହେଲେ । ନାୟକ ନାୟିକା ଉଭୟେ ମଧ୍ୟ ବିରହ ଜ୍ୱାଳାରେ ଜର୍ଜ୍ଜରିତ ହେଲେ ।

ଭଞ୍ଜଙ୍କ ଅନ୍ୟାନ୍ୟ କାବ୍ୟଗୁଡ଼ିକରେ ନାୟିକାଠାରୁ ନାୟକଙ୍କୁ ଦୂରେଇ ଦେବା ଲାଗି ଯେଉଁ ଉପାୟ ଅବଲମ୍ବନ କରାଯାଇଛି ଏଠାରେ ତାହା ସମ୍ପୂର୍ଣ୍ଣ ନୂତନ ବୋଲି ମନେ ହୁଏ ।

କାନ୍ତା ବିଚ୍ଛେଦ ଜନିତ ବିରହ ଜ୍ୱାଳାକୁ ଚିତ୍ରଣ କରିବା ପାଇଁ କବି ବର୍ଷାଋତୁ ଛାନ୍ଦର ଅବତାରଣା କରିଛନ୍ତି —

"ହେଲ ବରଷା ଚାର ସୁରଞ୍ଜନ, ନହେଲେପିହେଲ ପ୍ରାପ୍ତେ ଅର୍ଜନ ।
ଅପି ଆଷାଢ଼ ହେ ଘନଘୋଡ଼ାଇ, ପିଇ ଗୀତ ଦେଖାଇଲ ବଢ଼ାଇ ॥

× × ×

ରଶ୍ମି ଭଦ୍ରୀ ଶିରେ ବକ୍ଷଣ ।
ନୃତ୍ୟ କଲେ ଗିରି ଶିଖେ ରକ୍ଷଣ ॥
ଅନୁକ୍ଷଣେ ଧ୍ୱନି କଲେ ଜଳଧର ।
ଶୁଣି ତା-ହେ ଚେତନା ହେଲ ଦୂର ॥

ଇତ୍ୟାଦି

ଉକ୍ତ କାବ୍ୟର ବର୍ଷା ବର୍ଣ୍ଣନା ସ୍ଥଳଟିର ୪୬ଟି ପାଦ ପଦରେ ଉପଧା ମିଳନର ଦୃଷ୍ଟାନ୍ତ ଦେଇ ଲେଖିଛନ୍ତି ।

ଲବଙ୍ଗଲତା କାବ୍ୟର ପଞ୍ଚମ ଛାନ୍ଦରେ ରାଜକୁମାର ପଥିକକୁ ସମ୍ବୋଧନ କରି ନିଜର ହୃଦ ମନୋଭାବ ବ୍ୟକ୍ତ କରିଅଛନ୍ତି । ପଞ୍ଚମ ଛାନ୍ଦର ପଞ୍ଚଦଶ ପଦରେ କବି ତାଙ୍କ ସମୟରେ କାଗଜ ପ୍ରଚଳନ ଥିବା କଥା ସୂଚାଇ ଲେଖିଛନ୍ତି ।

"ତାଗଜେ ଲସି ଲେଖି ଥିଲେ ମୋ ରୂପ, ତାହାଁ ମିଳନ୍ତା ପଛରେ ହେ, ପଥିକ"

ନାୟିକା ଲବଙ୍ଗଲତା ଅତି ପୀଡ଼ାରେ ଜୀବନ ଦିବା ଅବସ୍ଥା ଆସି ପହଞ୍ଚିଲା । ସମସ୍ତେ ଉଦ୍‌ବେଗ ହୋଇଉଠିଲେ । ଏହି ସମୟରେ ଶ୍ୱେତ ଦେଶରେ ଜଣେ ଯୋଗୀ ଆସି ପ୍ରବେଶ କଲେ । ରାଜା ସମସ୍ତ କଥା ଯୋଗୀଙ୍କୁ କହି ରାଜପୁତ୍ରର ନିରୁଦ୍ଦେଶ କଥା କହିବାରୁ ଯୋଗୀ ରାଜପୁତ୍ରର ଅବସ୍ଥାନ କଥା ଧ୍ୟାନ ବଳରେ ଜାଣିପାରି ସେଠାରୁ ଉଦୟ ରାଜ୍ୟର ରାଜପୁରରେ ପ୍ରବେଶ କରି ରାଜକୁମାରଙ୍କର ନିଦ୍ରିତ ଅବସ୍ଥାରେ ତାଙ୍କୁ ଯୋଗ ବଳରେ ନେଇ ଆସି ଶ୍ୱେତ ରାଜ୍ୟରେ ପ୍ରବେଶ ହେଲେ । ରାଜକୁମାରଙ୍କୁ ଦେଖି ସମସ୍ତେ ଆନନ୍ଦିତ ହେଲେ । ପ୍ରିୟତମଙ୍କର ଆଗମନ ଦେଖି ରାଜକନ୍ୟା ଲବଙ୍ଗଲତା ପ୍ରସନ୍ନା ହେଲେ । ରାଜକୁମାର ଲବଙ୍ଗଲତାଙ୍କୁ ନେଇ ବହୁକାଳ ପର୍ଯ୍ୟନ୍ତ ସୁଖରେ ଜୀବନ ଯାପନ କଲେ ।

କାବ୍ୟ ଶେଷରେ ରାଜକୁମାର ଶ୍ରୀଦାମେ ଯେ ପ୍ରିୟା ପାଖରେ ପ୍ରତିଜ୍ଞା କରିଥିବା କଥା କବି ଲେଖିଛନ୍ତି—

'ବର ନରମ୍ଭିମା ଗୀତ ଥିବା ଯାକେ
ନୋହିବ ଲଭେ ଅନ୍ତର
ତରଳ ନୟନା ନୟନ କୋଣେ ଛୁଇଁ ମୁହିଁ ଓଷ୍ଠାଧର ।।
(୭/୧୫)

ଏଇ ହେଲା ମୋଟାମୋଟି ଭାବରେ ଇଚ୍ଛାବତୀ କାବ୍ୟର ବିଷୟବସ୍ତୁ ।

ଭାଷା, ଭାବ ଓ ରଚନା ଶୈଳୀ ଦୃଷ୍ଟିରୁ ଇଚ୍ଛାବତୀ କାବ୍ୟ ଯେ ଭଞ୍ଜୀୟ ପ୍ରତିଭାର ପ୍ରଥମ କାବ୍ୟକୃତି ହେବା ଅଯୁକ୍ତ ହେବ ନାହିଁ । ଇଚ୍ଛାବତୀ କାବ୍ୟର ଭାଷା ଅତି ସରଳ, କିନ୍ତୁ ଭାବ ସେତେ ଗଭୀର ନୁହେଁ । ତଥାପି ଏହାର ପଦ ଯୋଜନା, ଉପମା, ଅଳଂକାର ପ୍ରଭୃତି ପାଠକମାନଙ୍କୁ ମୁଗ୍ଧ କରିବ ଏଥିରେ ସନ୍ଦେହ ନାହିଁ । ଉପେନ୍ଦ୍ର ଭଞ୍ଜଙ୍କର ପରବର୍ତ୍ତୀ କାବ୍ୟଗୁଡ଼ିକରେ ସରସ ଭାଷା ପୌଢ଼ତା ପ୍ରାପ୍ତ ହୋଇ ଭଞ୍ଜୀୟ ପ୍ରତିଭାର ଚୂଡ଼ିମନ୍ତ ଉଜ୍ଜ୍ୱଳ ପ୍ରଦର୍ଶନ କରିଅଛି । ଇଚ୍ଛାବତୀ କାବ୍ୟରେ କେବଳ ଏକ ନାୟକ ଓ ଏକ ନାୟିକାଙ୍କ କଥାବସ୍ତୁ ଓ ଭାବଗତ ନିହିତ । ତାହା ପରେ ଲାବଣ୍ୟବତୀରେ ଉତ୍କର୍ଷ ଲଭି ଓ ରସୋଜ୍ଜ୍ୱଳ ପ୍ରାପ୍ତ ହୋଇ ଶେଷରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ପ୍ରୌଢ଼ତ୍ୱ ଲାଭ କରିଅଛି ।

ଭଞ୍ଜୀୟ କାବ୍ୟ ପ୍ରତିଭାର ବିକାଶ ବିଷୟ ଆଲୋଚନା କଲେ ଦେଖାଯାଏ ଇଚ୍ଛାବତୀ ଏକ କ୍ଷୁଦ୍ରତମ କାବ୍ୟ ହେଲେହେଁ ପ୍ରଥମ ଭଞ୍ଜ କାବ୍ୟ ଭାବରେ ସମାଲୋଚକମାନଙ୍କୁ ଆକର୍ଷିତ କରିବ ଏଥିରେ ସନ୍ଦେହ ନାହିଁ ।

ଇଚ୍ଛାବତୀରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷା, ଦେଉଁମର ଓ କଳ୍ପନା ବିକାଶ ତଥା ଉତ୍ତୁଙ୍ଗ ଭାବ ଗାମ୍ଭୀର୍ଯ୍ୟ ଦ୍ୱାରା କାବ୍ୟଟିର କଳେବର ଉମଣ୍ଡିତ ହୋଇ ନ ଥିଲେ ମଧ୍ୟ ସରଳ, ତରଳ ପଦାବଳୀ ଓ ସୁସଜ୍ଜ ଭାବରାଶି ତଥା ସାଧାରଣ ଉପମାଳଙ୍କାର ପ୍ରୟୋଗ ଦ୍ୱାରା କାବ୍ୟଟି ସର୍ବଜନାଦୃତ ହୋଇଅଛି ।

କବି କାବ୍ୟ ଆରମ୍ଭରେ ସୀତା, ରାମ, ଲକ୍ଷ୍ମଣ ଓ ଶିବଙ୍କୁ ବନ୍ଦନା କରି କାବ୍ୟଟି ଆରମ୍ଭ କରିଛନ୍ତି—

ଜୟ ଜୟ ସୁଭଗତ ଭରତ ବନ୍ଧିତ ।
ଜୟ ଜୟ ସୁଲକ୍ଷଣ ଲକ୍ଷ୍ମଣ ମୋଦିତ ହେ ।।
ଜୟ ଜୟ ସୀତା ସୀତାଂଶୁ ଲପନା ପ୍ରିୟ ।
ଜୟ ଜୟ ଶତ୍ରୁଘ୍ନ ଶତ୍ରୁଘ୍ନ ସୁତୋଷାଦ୍ୟ ହେ ।।

× × ×

ଜୟ ଜୟ ସଦାଶିବ ସଦାଶିବ ପୂଜ୍ୟ ।
ଜୟ ଭବ ତରଣୀ ତରଣି ବଂଶ ରାଜ ହେ ।।
ଜୟ ଜୟ ମରୁତ ମରୁତ ସୁତ ଇଷ୍ଟ ।
ଜୟ ଜାଣ ବିଭୀଷଣ ବିଭୀଷଣ ରକ୍ଷ ହେ ।।
ହେ ଶମ୍ଭୁ ପଦାରବିନ୍ଦ ଚିତ୍ତେ ଧ୍ୟାନ କରି ।
ଲବକଣ୍ଠ ଚରିତ ମୁଁ କହଇ ବିସ୍ତାରି ହେ ।

କାବ୍ୟର ପ୍ରାରମ୍ଭିକ ଛାନ୍ଦ ଶେଷରେ କବି ରାମଚନ୍ଦ୍ରଙ୍କୁ ଧ୍ୟାନକରି ଛାନ୍ଦ ଭଣିତି କରିଅଛନ୍ତି, ଏବଂ ପ୍ରତ୍ୟେକ ଛାନ୍ଦ ଶେଷରେ ପଦ ସଂଖ୍ୟା ମଧ୍ୟ ଉଲ୍ଲେଖ କରିଅଛନ୍ତି । କାବ୍ୟର ଷଷ୍ଠ ଛାନ୍ଦ ଭଣିତିରେ ସେ ଲେଖିଛନ୍ତି—

"ସୀତାରାମ ପଦ୍ମ ଚରଣ ଗୁଣି, ଉପେନ୍ଦ୍ର ମଙ୍ଗରାଜ ଏ ଭଣି"

ଉପେନ୍ଦ୍ର ଭଞ୍ଜ ପ୍ରଥମାବସ୍ଥାରେ ଲବକଣ୍ଠ, ଚୌପଦୀଭୂଷଣ, ଯମକରାଜ ଚଉତିଶା, ଲବଣ୍ୟନିଧି, ରସପଞ୍ଚକ ପ୍ରଭୃତି ଛୋଟ ଛୋଟ କାବ୍ୟଗୁଡିକ ରଚନା କରିଥିଲେ । ସେହି ସବୁ କାବ୍ୟଗୁଡ଼ିକରେ ସେ ମଙ୍ଗରାଜ ପଦ ବ୍ୟବହାର କରିଥିବା ଦେଖାଯାଏ ।

ସେ ମଙ୍ଗରାଜ ପଦ ବ୍ୟବହାର କରିଥିବାରୁ ଓଡ଼ିଶାର ସାହିତ୍ୟିକ ଓ ଆଲୋଚକମାନଙ୍କ ମଧ୍ୟରେ ଆନ୍ଦୋଳନ ସୃଷ୍ଟି ହୋଇଅଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହା ଉପେନ୍ଦ୍ର ଭଞ୍ଜଙ୍କର ଉପାଧି ବା ପଦପଦବୀ ନୁହେଁ । ଘୁମୁସର ରାଜ ବଂଶରେ କେହି କେହି ରାଜପୁତ୍ର ମଙ୍ଗରାଜ ପଦ ବ୍ୟବହାର କରୁଥିଲେ ।

ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜ ଭଭିନ୍ନ ରାଜ ପରିବାରରୁ ସାତଟି ରାଜକନ୍ୟାଙ୍କର ପାଣି ଗ୍ରହଣ କରିଥିଲେ । ସେମାନଙ୍କର ଔରସରୁ ବାରଟି ସନ୍ତାନ ଜନ୍ମଲାଭ କରିଥିଲେ । ସେ ଧରାକୋଟ ରାଜକନ୍ୟାଙ୍କ ଔରସ ଜାତ ପୁତ୍ର ଜଗନ୍ନାଥ ମଙ୍ଗରାଜଙ୍କୁ . ଜଗନ୍ନାଥ ପ୍ରସାଦମୁଠା, ବୁରୁମୁ ରାଜକନ୍ୟାଙ୍କ ଔରସ ଜାତ ପୁତ୍ର ହରିଶରଣ ଭଞ୍ଜଙ୍କୁ "ବୁଗୁଡାମୁଠା ଓ ଜଳକୋଟ ରାଜକନ୍ୟାଙ୍କ ଔରସ ଜାତ ପୁତ୍ର ସଦାଶିବ ଶ୍ରେଷ୍ଠରାୟଙ୍କୁ ବାଲିପଦର ମୁଠା, ଏପରି ତିନିପୁତ୍ରଙ୍କୁ ତିନୋଟି ମୁଠା ବା ରାଜ୍ୟର ସିମାନ୍ତ ଅଞ୍ଚଳର ଶାସନ ଦାୟିତ୍ୱ ଦେଇ ପଠାଇ ଦେଇଥିଲେ । ଜଗନ୍ନାଥ ମଙ୍ଗରାଜ ଜଗନ୍ନାଥ ପ୍ରସାଦରେ ଗୋଟିଏ ଗଡ଼ ନିର୍ମାଣ କରି ରହିଥିଲେ । ସେ ଜଗନ୍ନାଥ ପ୍ରସାଦ ନିକଟରେ ମଙ୍ଗରାଜପୁର ନାମରେ ଗୋଟିଏ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରି ଆବଶ୍ୟକୀୟ ଭୂସମ୍ପତ୍ତି ଦାନ କରିଥିଲେ ।

ଘୁମୁସର ଭଞ୍ଜ ରାଜବଂଶରେ ମଙ୍ଗରାଜ ଉପାଧି ଛଡ଼ା ସାମନ୍ତ ସିଂହାର, ବକ୍ଷିବର, ଶ୍ରୀଚନ୍ଦନ, ଭୂୟାଁ, ଶ୍ରେଷ୍ଠରାୟ, ବଡ଼ଜେନା ଇତ୍ୟାଦି ସଜ୍ଞା ମଧ୍ୟ ବ୍ୟବହୃତ ହେଉଥିବା ଇତିହାସରୁ ଜଣାଯାଏ । ରାଜା ନୀଳକଣ୍ଠ ଭଞ୍ଜଙ୍କର ରାମଚନ୍ଦ୍ର ଭଞ୍ଜ ବୋଲି ଗୋଟିଏ ପୁତ୍ର ଥିଲେ । ସେ ମଧ୍ୟ ମଙ୍ଗରାଜ ପଦ ବ୍ୟବହାର କରୁଥିଲେ ।

'ରାମଚନ୍ଦ୍ର ଭଞ୍ଜ ଏକ ରତ୍ନି ଜାତ, ମଙ୍ଗରାଜ ପଦ ଯାହାଙ୍କର ଖ୍ୟାତ'

(ଭଞ୍ଜବଂଶାନୁଚରିତ)

ଜଗନ୍ନାଥ ମଙ୍ଗରାଜ ଉପେନ୍ଦ୍ର ଭଞ୍ଜଙ୍କର ପିତା ନୀଳକଣ୍ଠ ଭଞ୍ଜଙ୍କର ବୈମାତ୍ରେୟ ଭ୍ରାତା ହୋଇଥିବାରୁ ଉପେନ୍ଦ୍ର ଭଞ୍ଜ ଜଗନ୍ନାଥ ପ୍ରସାଦ ଗଡ଼ରେ ନୟାଗଡ଼ ଯିବା ଆସିବା ବେଳେ ବହୁତ ସମୟ ଅବସ୍ଥାନ କରୁଥିଲେ ।

ରାଜା ଜଗନ୍ନାଥ ମଙ୍ଗରାଜଙ୍କ ସମସ୍ତରେ ଜଗନ୍ନାଥ ପ୍ରସାଦଠାରେ ଗୋଟିଏ ଭଞ୍ଜପୀଠ ପ୍ରତିଷ୍ଠିତ ହୋଇଥିଲା । ପୀଠଟି ଗୋଟିଏ ସୁନ୍ଦର ପରିବେଶ ମଧ୍ୟରେ ଥିବାରୁ ଉପେନ୍ଦ୍ର ଭଞ୍ଜ ସେଠାରେ ବହୁତ ସମସ୍ତ ଅତିବାହିତ କରୁଥିଲେ । ଭଞ୍ଜ ପୀଠର ପୂର୍ବଦିଗରେ ଗୋଟିଏ ପ୍ରକାଣ୍ଡ ପୁଷ୍କରଣୀ ଯେଉଁଥିରେ ଅସଂଖ୍ୟ ପଦ୍ମ ପୁଷ୍ପ ପ୍ରସ୍ଫୁଟିତ ହୋଇ ସେଥିରେ ଭ୍ରମରମାନେ ପୁଷ୍ପରୁ ପୁଷ୍ପକୁ ଉଡ଼ି ଗୁଞ୍ଜରଣ ସୃଷ୍ଟି କରୁଥିଲେ । ପୁଷ୍କରଣୀରେ ହଂସମାନେ ଦଳ ଦଳ ହୋଇ କ୍ରୀଡ଼ା କରୁଥିଲେ । ପୀଠକୁ ଲାଗି ଉତ୍ତର ଦିଗରେ ଗୋଟିଏ ପ୍ରକାଣ୍ଡ ପୁଷ୍ପ ଉଦ୍ୟାନ । ସେଥିରେ ନାନା ଜାତିର ସୁବାସିତ ପୁଷ୍ପ ପ୍ରସ୍ଫୁଟିତ ହୋଇ ମନ ପ୍ରାଣ ହରି ନେଉଥିଲା ।

ପୀଠରେ ବସି ପଶ୍ଚିମ ଦିଗକୁ ଦୃଷ୍ଟି ନିକ୍ଷେପ କଲେ ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କର ସୁନ୍ଦର ଏବଂ ସମୁଚ୍ଚ ବିଗ୍ରହ ଦୃଷ୍ଟିରେ ପଡ଼େ । ଏପରି ସୁନ୍ଦର ପରିବେଶ ମଧ୍ୟରେ ବସି ଉପେନ୍ଦ୍ର ଭଞ୍ଜ କାବ୍ୟ କବିତା ରଚନା କରି ଆନନ୍ଦ ଉପଭୋଗ କରୁଥିଲେ । ଉପେନ୍ଦ୍ର ଭଞ୍ଜ ସେହି ଭଞ୍ଜ ପୀଠରେ ବସି ଲାବଣ୍ୟବତୀ, ଚୌପଦୀ ଭୂଷଣ ପ୍ରଭୃତି ଛୋଟ ଛୋଟ କାବ୍ୟ ଗୁଡ଼ିକ ରଚନା କରିଥିଲେ । ରାଜା ଜଗନ୍ନାଥ ମଙ୍ଗରାଜଙ୍କର ଉପଯୁକ୍ତ ଦାୟାଦ ଭାବରେ ଉପରୋକ୍ତ କାବ୍ୟ କବିତା ଗୁଡ଼ିକର ଭଣିତାରେ ମଙ୍ଗରାଜ ପଦ ବ୍ୟବହାର କରିଅଛନ୍ତି । ଏଥିରେ ଜଗନ୍ନାଥ ମଙ୍ଗରାଜ ଅତ୍ୟନ୍ତ ଗୌରବାନ୍ୱିତ ମନେ କରୁଥିଲେ ।

କବି କାମ୍ବୋଦି ଛାନ୍ଦରେ ଲେଖିଛନ୍ତି—

'ଯାହାର ଯୁବା ବୟସେ, ମନର ଯୁବତୀ ପାଶେ
ନାହିଁ ତାହା ଜୀଇଁବାର କି ପ୍ରୟୋଜନ '

ପୁଣି ସେହି ଛାନ୍ଦର ଏକ ପଦରେ ଲେଖିଛନ୍ତି—

"ନୃପତି ରାଜ୍ୟ ବିହୀନ, ମନୁଷ୍ୟ ହୀନ ନୟନ,
ଯୁବତୀ ବିହୀନ ଯୁବା ଶବ ସମାନ"

ଉପରୋକ୍ତ ଦୁଇଟି ପଦ ତାଙ୍କ ନିଜ ପ୍ରତି ପ୍ରଯୁଜ୍ୟ ହୋଇଅଛି ।

ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ ଘୁମୁସରରେ ରାଜା ହୋଇଥିବା ବେଳେ ତାଙ୍କର ଖୁଲ୍ଲତାତ ଘନଭଞ୍ଜ ୧୬୮୩ ମସିହାରେ ଘୁମୁସର ରାଜ୍ୟର କେତେ ପ୍ରଜାମାନଙ୍କୁ ମେଳକରି ନୀଳକଣ୍ଠ ଭଞ୍ଜଙ୍କ ବିରୁଦ୍ଧରେ ବିଦ୍ରୋହ କରିବାରୁ ସେ ବିଦ୍ରୋହର ମୁକାବିଲା କରି ନ ପାରି ଘୁମୁସର ରାଜ୍ୟ ତ୍ୟାଗ କରି ନୟାଗଡ଼ ମାମୁଁ ପାଖରେ ଯାଇ ପୁଅ ଉପେନ୍ଦ୍ର ଭଞ୍ଜଙ୍କ ସହିତ ଅବସ୍ଥାନ କରିଥିଲେ । ସେତେବେଳେ ଉପେନ୍ଦ୍ର ଭଞ୍ଜ ନିଜର ପ୍ରିୟତମାଙ୍କୁ ହରାଇ କଷାୟବସ୍ତ୍ର ପରିଧାନ କରି ସେଠାରେ ବୈରାଗ୍ୟ ଜୀବନ ଅତିବାହିତ କରୁଥିଲେ । ଏଣେ ପିତାଙ୍କ ରାଜ୍ୟ ଭ୍ରଷ୍ଟ, ତେଣେ ନିଜର ପତ୍ନୀଙ୍କର ଅକାଳ ବିୟୋଗ ଏହି କଥାକୁ ସେ ରସିକ ହାରାବଳୀ କାବ୍ୟରେ ଉଲ୍ଲେଖ କରିଅଛନ୍ତି ।

"ବାପାଙ୍କୁ ହେବାରୁ ରାଜ୍ୟ ଭ୍ରଷ୍ଟ, ଯୁବାଙ୍କୁ ହୋଇବାରୁ ପତ୍ନୀ ନଷ୍ଟ ।
କହେ ଉପେନ୍ଦ୍ର ଭଞ୍ଜ ସାଗରରେ ଏଥୁ ବଳି ଆଉ ନାହିଁ କଷ୍ଟ ।"

ଭାବବତୀର ଉପସଂହାର ଦୃଷ୍ଟିରୁ ମଧ୍ୟ କରୁଣ, ପ୍ରଶ ପ୍ରଯୁଜ୍ୟ ହୋଇଥିବାରୁ କବି ତାହା ଉଲ୍ଲେଖ କରିଅଛନ୍ତି ।

ଭାବବତୀ ଏକ କ୍ଷୁଦ୍ର କାବ୍ୟ ହେଲେ ମଧ୍ୟ ଏହା ସାହିତ୍ୟିକ, ସମାଲୋଚକ ଓ ଗବେଷକମାନଙ୍କ ମଧ୍ୟରେ ଯୁଗ ଯୁଗ ଧରି ଆଦର ଲାଭକରିବ ଏଥିରେ ସନ୍ଦେହ ନାହିଁ ।



# ପାଦଟୀକା

୧ । ଭାଗବତଶ୍ରୀ କାବ୍ୟ ୧୯୩୧ ମସିହାରେ ଶ୍ରୀ ମାଳମଣି ମହାପାତ୍ରଙ୍କ ଦ୍ୱାରା ସଂଗୃହୀତ ଓ ପ୍ରଥମ ଥର ପ୍ରକାଶିତ ।

୨ । ଭାଗବତଶ୍ରୀ କାବ୍ୟ ୧୯୬୯ ମସିହାରେ ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ଦ୍ୱାରା ଟୀକା ଓ ମୁଦ୍ରଣ ଉତ୍ତର ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା ପ୍ରକାଶିତ ନୂତନ ସଂସ୍କରଣ ।

୩ । ଭାଗବତଶ୍ରୀ କାବ୍ୟ କଟକ ଧର୍ମଗ୍ରନ୍ଥ ଷ୍ଟୋର ଦ୍ୱାରା ପ୍ରକାଶିତ ।

୪ । ଭଞ୍ଜ ଭୂମିକା ଅଧ୍ୟାପକ ମୌଳିକ ମାଳ ବ୍ରହ୍ମା

୫ । ଓଡ଼ିଆ ସାହିତ୍ୟର କ୍ରମବିକାଶ ତୃତୀୟ ଭାଗ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍. ଏ. ।

୬ । ଭଞ୍ଜ ସାହିତ୍ୟ ଏକ ଅଭିଦର୍ଶନ ଅଧ୍ୟାପକ ଡ଼ଃ ଉପେନ୍ଦ୍ର ନାୟକ ।

୭ । ଶବ୍ଦ ଚମତ୍କାର ଓ ଭଞ୍ଜୀୟ କାବ୍ୟକଳା ଅଧ୍ୟାପକ ଶ୍ରୀ ନଶାମଣି ମିଶ୍ର

୮ । ଚାରୁଣୀଚରଣ ଗ୍ରନ୍ଥାବଳୀ ବ୍ରହ୍ମପୁର ବୈଶ୍ୟବିଦ୍ୟାଳୟ ।

୯ । ଓଡ଼ିଶା ଇତିହାସ ଡ଼ଃ ହରେକୃଷ୍ଣ ମହତାବ ।

୧୦ । ପ୍ରାଚୀନ ଉତ୍କଳ ଜଗବନ୍ଧୁ ସିଂହ—(ଓଡ଼ିଶା ସାହିତ୍ୟ ଏକାଡ଼େମୀ) ।

*—*